# କଳିଙ୍ଗ ସମ୍ରାଟ

# ବିଜୁ ପଟ୍ଟନାୟକ

(ସଂକ୍ଷିପ୍ତ ଜୀବନୀ)



ଉତ୍କଳ ନାୟକ

# କଳିଙ୍ଗ ସମ୍ରାଟ
# ବିଜୁ ପଟ୍ଟନାୟକ

(ସଂକ୍ଷିପ୍ତ ଜୀବନୀ)



ଉତ୍କଳ ନାୟକ

ଅରୁଣ ତରୁଣ

ଶିଶୁ ସାହିତ୍ୟ ବିକାଶ ସମିତି
ରାଉରକେଲା – ୭୬୯ ୦୪୨

ISBN. 81 - 87968 - 04 - 4

# କଳିଙ୍ଗ ସମ୍ରାଟ
# ବିଜୁ ପଟ୍ଟନାୟକ

ରଚନା : ଉତ୍କଳ ନାୟକ



# KALINGA SAMRAT
# BIJU PATTNAIK


| | |
|---|---|
| Author | UTKAL NAYAK |
| Publisher | *ARUN TARUN* |
| | SHISHU SAHITYA VIKASH SAMITI |
| | RAURKELA - 42 |
| Printed at | Jagannath Process, Cuttack |
| 1st Edition | 1999 |
| Price | Rs. 20/- (Twenty) only |

# ବିଜୁବାବୁଙ୍କ ପରିବାର

ବିଜୁବାବୁଙ୍କର ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଥିଲେ ଜଣେ ପ୍ରତିଭାବାନ ଯୁବକ । ସେ ୧୮୮୬ ମସିହାରେ ମାନ୍ଦ୍ରାଜ ଖ୍ରୀଷ୍ଟିୟାନ କଲେଜରୁ ବି.ଏ. ପାସ୍ କଲା ପରେ ପାରଳାଖେମୁଣ୍ଡି ରାଜାଙ୍କୁ ଦେଖାକରିଥିଲେ । ରାଜା ତାଙ୍କର ଉଚ୍ଚ ଅଭିଳାଷ ଓ ପ୍ରତିଭାର ପରିଚୟ ପାଇ ଆନନ୍ଦିତ ହେଲେ, ଲକ୍ଷ୍ମୀନାରାୟଣଙ୍କୁ ବିଲାତ ପଠାଇ I.C.S. ଟ୍ରେନିଂ ଦେବାର ବ୍ୟବସ୍ଥା କରିଦେଲେ । କିନ୍ତୁ ଜଣେ ବିଶ୍ୱାସଘାତକ ବନ୍ଧୁଙ୍କ ଦ୍ୱାରା ସେ ପ୍ରତାରିତ ହୋଇ I.C.S. ଟ୍ରେନିଂ ପାଇବାରୁ ବଞ୍ଚିତ ହୋଇଥିଲେ । ତାଙ୍କର ସବୁ ସ୍ୱପ୍ନ ମଉଳିଗଲା । ନିରୁପାୟ ହୋଇ ସେ ତାଙ୍କର ନିଜ ଗାଆଁ ଭଞ୍ଜନଗରର ନୂଆଗାଁକୁ ଫେରିଗଲେ ।

କୌଣସି ପ୍ରତିଭାବାନ ଯୋଗ୍ୟ ମଣିଷ ସାମାନ୍ୟ ଧକ୍କାପାଇ ଘର କୋଣରେ ବସି ରହି ପାରେନା । ବରଂ ସେ ଅଧିକ ସାହସ ଧରି ଧୈର୍ଯ୍ୟର ସହିତ ଆଗେଇ ଯିବାକୁ ଦୃଢ଼ ଶପଥ ନିଏ । ସେଥିରେ ତାର ଭାଗ୍ୟର ପରିବର୍ତ୍ତନ ହୁଏ । ତାହା ହିଁ ହୋଇଥିଲା— ଲକ୍ଷ୍ମୀନାରାୟଣଙ୍କ ଜୀବନରେ । ସେତେବେଳେ ଆଜିକାଲି ପରି ରାସ୍ତାଘାଟ ଓ ଗାଡ଼ିଘୋଡ଼ାର ସୁବିଧା ହୋଇ ନଥାଏ । ଯୁବକ ଲକ୍ଷ୍ମୀନାରାୟଣ ମନରେ ସାହସ ବାନ୍ଧି ଶଗଡ଼ଗାଡ଼ିରେ ବସି ଭଞ୍ଜନଗରରୁ କଟକ ଅଭିମୁଖେ ଯାତ୍ରା ଆରମ୍ଭ କରିଦେଲେ । କିନ୍ତୁ ସେ ବାଟବଣା ହୋଇ କଟକରେ ପହଞ୍ଚି ନପାରି ସମ୍ବଲପୁରରେ ପହଞ୍ଚିଲେ । କଥାରେ ଅଛି— *"ଦଇବ ଦଉଡ଼ି ମଣିଷ ଗାଈ,*

*ଯେଣିକି ଓଟାରେ ତେଣିକି ଯାଇ ।"*

ପୁଣି କୁହାଯାଇଛି— *"ଭଗବାନ୍ ଯାହା କରନ୍ତି, ପ୍ରାଣୀର ମଙ୍ଗଳ ପାଇଁ ।"*

ସମ୍ବଲପୁରରେ ପହଞ୍ଚି ଲକ୍ଷ୍ମୀନାରାୟଣବାବୁ ଭଗବାନ୍‌ଙ୍କ ଦୟାରୁ ସିଭିଲ କୋର୍ଟରେ କିରାଣୀ ଗୁକିରି ଖଣ୍ଡେ ପାଇଗଲେ । ମାସକୁ କୋଡ଼ିଏ ଟଙ୍କା ଦରମା ମିଳିଲା । ବୁଦ୍ଧିମାନ ତଥା ନିଷ୍ଠାପର ଯୁବକ ଲକ୍ଷ୍ମୀନାରାୟଣ ଅଳ୍ପ ଦିନ ମଧ୍ୟରେ ସେ ଅଫିସରେ ପ୍ରଶଂସାର ପାତ୍ର ହୋଇଉଠିଲେ । କେତେଜଣ ବଂଧୁ ତାଙ୍କର କାର୍ଯ୍ୟକଳାପ ଓ ଲୋକପ୍ରିୟତା ଦେଖି ଈର୍ଷାପରାୟଣ ହୋଇଉଠିଲେ । ତାଙ୍କ ବିରୋଧରେ ବିଭିନ୍ନ ଚକ୍ରାନ୍ତ ଚଳାଇଲେ । କଷ୍ଟସହିଷ୍ଣୁ ତଥା ନିର୍ଭୀକ ଲକ୍ଷ୍ମୀନାରାୟଣ ଏଥିରେ ବିଚଳିତ ନହୋଇ ପରିସ୍ଥିତିର ସମ୍ମୁଖୀନ ହେଲେ । ଫଳରେ ଅସହିଷ୍ଣୁ ମନୋଭାବ ନେଇଥିବା ଲୋକେ ପରାସ୍ତ ହେଲେ । ତଥାପି ସେ ସମ୍ବଲପୁର ଛାଡ଼ି ଦେବାକୁ ସ୍ଥିର କରିଥିଲେ ।

ସମ୍ବଲପୁରରୁ ଆସି ଲକ୍ଷ୍ମୀନାରାୟଣବାବୁ କଟକରେ ଜଣେ ମୁନ୍‌ସିଫ୍ ଭାବରେ ଯୋଗଦେଲେ । କିଛିଦିନ ପରେ ସେ ଜଣେ ପ୍ରଭାବଶାଳୀ ଟାଣୁଆ ମୁନସିଫ୍ ଭାବରେ ସୁନାମ ଅର୍ଜନ କରିଥିଲେ । ସ୍ୱାଧୀନ ମତ ଦେଉଥିବାରୁ ଇଂରେଜ ସାହେବମାନେ ମଧ୍ୟ ତାଙ୍କୁ ଉଚ୍ଚ ପ୍ରଶଂସା କରୁଥିଲେ ।

ସେତେବେଳେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ପ୍ରବଳ ଉଦ୍ୟମ ହେଉଥାଏ । ମଧୁବାବୁ ଓ ଗୋପବଂଧୁଙ୍କ ଭଳି ବଡ଼ ବଡ଼ ନେତାମାନେ ଲକ୍ଷ୍ମୀ-ନାରାୟଣବାବୁଙ୍କ ସହଯୋଗକୁ ସ୍ୱାଗତ କରୁଥିଲେ । ଆବଶ୍ୟକବେଳେ ସେ ଉତ୍କଳ ସମ୍ମିଳନୀର ସଫଳତା ପାଇଁ ଆର୍ଥିକ ତଥା ଶାରୀରିକ ଶ୍ରମ ଦାନ କରୁଥିଲେ । ମାତୃଭାଷା ଓ ମାତୃଭୂମିର ମର୍ଯ୍ୟାଦା ରକ୍ଷା କରିବା ତଥା ଓଡ଼ିଆ ଜାତି ଓ ସଂସ୍କୃତିର ବିକାଶ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ନିଜର ପରଂପରାକୁ ସୁରକ୍ଷା ଦେବା ସଂଗେ ସଂଗେ ସେ ଆଧୁନିକତାକୁ ମଧ୍ୟ ସ୍ୱାଗତ କରୁଥିଲେ । ବାହାରକୁ ସେ ଯେତେ ଆଧୁନିକ ହେଲେ ମଧ୍ୟ ଭିତରେ ଥିଲେ ଅତିମାତ୍ରାରେ ଉତ୍କଳୀୟ ।

ଭାରତର ସ୍ୱାଧୀନତା ଆନ୍ଦୋଳନର ଏକ ପ୍ରମୁଖ ସ୍ଥାନ ହେଉଛି, ବର୍ତ୍ତମାନର ବଙ୍ଗଳାଦେଶର ଚିଟ୍ଟାଗଙ୍ଗ । ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ପରିବାରରେ ଜନ୍ମଗ୍ରହଣ କରିଥିବା ଆଶାଲତା ଦେବୀଙ୍କୁ ଲକ୍ଷ୍ମୀନାରାୟଣବାବୁ ବିବାହ କରିଥିଲେ । ତାଙ୍କର ଶ୍ୱଶୁର ଥିଲେ ହାଇସ୍କୁଲର ଜଣେ ପ୍ରଧାନଶିକ୍ଷକ । ଆଶାଲତା ଦେବୀ କେବଳ ତାଂକର ସହଧର୍ମିଣୀ ନଥିଲେ ବରଂ ଜଣ ସହକର୍ମିଣୀ ଭାବରେ ବିଭିନ୍ନ କାର୍ଯ୍ୟ ତୁଲାଉଥିଲେ । କଟକର ତୁଳସୀପୁରରେ ଅବସ୍ଥାନ କରିବା ସମୟରେ ସେ ଦୁଃଖୀରଙ୍କିଙ୍କୁ ଅକୁଣ୍ଠ ସାହାଯ୍ୟ କରୁଥିବାରୁ ତାଙ୍କୁ ଲୋକେ 'ମା ଠାକୁରାଣୀ' ବୋଲି କହୁଥିଲେ। ସେ କେବେ ଦୁଃଖରେ ଭାଙ୍ଗିପଡୁ ନଥିଲେ କିମ୍ବା ଆନନ୍ଦରେ ବିଭୋର ହେଉ ନଥିଲେ । ପିଲାମାନଙ୍କୁ ମଣିଷ ଭଳି ମଣିଷ କରି ତୋଳିବାକୁ ସେ ଶିକ୍ଷା ଦେଉଥିଲେ ।

ପିତା ଲକ୍ଷ୍ମୀନାରାୟଣବାବୁଙ୍କର ଦେଶପ୍ରୀତି, ସାହସ ଓ ନିଷ୍ଠା ଏବଂ ମାତା ଆଶାଲତା ଦେବୀଙ୍କର ଧର୍ମପରାୟଣତା ଓ ସତ୍ୟବାଦିତା ତାଂକ ପିଲାମାନଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ।

ଲକ୍ଷ୍ମୀନାରାୟଣବାବୁଙ୍କର ଥିଲେ— ତିନିପୁଅ ଓ ଗୋଟିଏ ଝିଅ । ବଡ଼ପୁଅ ଶ୍ରଦ୍ଧାନନ୍ଦ ପରବର୍ତ୍ତୀ କାଳରେ ଜର୍ଜ ପଟ୍ଟନାୟକ ନାମରେ ଜଣେ ସଫଳ ଦନ୍ତ ଚିକିତ୍ସକ ଭାବରେ ସୁନାମ ଅର୍ଜନ କରିଥିଲେ । ଓଡ଼ିଶା ଅଲିମ୍ପିକ ଆସୋସିଏସନ୍ ସହିତ ସେ ସମ୍ପୃକ୍ତ ଥିଲେ । କଟକ ବାରବାଟୀ ଷ୍ଟାଡ଼ିୟମ ପ୍ରତିଷ୍ଠାରେ ତାଙ୍କର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ୧୯୯୦ ମସିହାରେ ତାଙ୍କର ଦେହାନ୍ତ ହୋଇଯାଇଛି । ଲକ୍ଷ୍ମୀନାରାୟଣବାବୁଙ୍କର ଦ୍ୱିତୀୟ ସନ୍ତାନ ଭାବେ ଝିଅ 'ମୁକ୍ତି' ଜନ୍ମଗ୍ରହଣ କରିଥିଲେ । ସେ ମଧ୍ୟ ଜଣେ ଉଚ୍ଚଶିକ୍ଷିତା ମହିଳା ଭାବେ ସେତେବେଳେ ଏମ୍. ଏ. ପାସ୍ ପରେ ବିବାହ କରିଥିଲେ— ମହାପାତ୍ର ପରିବାରରେ । ଭାଇମାନଙ୍କ ଭଳି ସେ ମଧ୍ୟ ଅତିମାତ୍ରାରେ ସ୍ୱାଭିମାନିନୀ ଓ ଓଡ଼ିଆପ୍ରେମୀ ଥିଲେ ।

ତୃତୀୟ ସନ୍ତାନ ଭାବେ ଜନ୍ମଗ୍ରହଣ କରିଥିଲେ ବିଜୟାନନ୍ଦ । ତାଙ୍କର ନକ୍ଷ, ଜାତକ ଓ ଜୀବନୀ ସଂପର୍କରେ ସ୍ୱତନ୍ତ୍ର ଭାବେ ଆଲୋଚନା କରାଯିବ ।

ଚତୁର୍ଥ ସନ୍ତାନ ଜୟାନନ୍ଦ । ସେ ସିଜୁ ପଟ୍ଟନାୟକ ଭାବେ ପରିଚିତ ଥିଲେ । ଇଣ୍ଡିୟାନ୍ ଏୟାର ଫୋର୍ସରେ ସେ ଜଣେ ଭାରପ୍ରାପ୍ତ ଅଧିନାୟକ ହୋଇପାରିଥିଲେ । କ୍ରିକେଟ୍ ଖେଳରେ ସେ ଥିଲେ ଓଡ଼ିଶାର ଅଦ୍ୱିତୀୟ— ଶ୍ରେଷ୍ଠ ଖେଳାଳି । ଦୁର୍ଭାଗ୍ୟର କଥା, ସେ ଖୁବ୍ କମ୍ ବୟସରେ କର୍କଟ ରୋଗରେ ପ୍ରାଣତ୍ୟାଗ କରିଥିଲେ । ଏହା ଥିଲା— ତାଙ୍କ ପରିବାର ପାଇଁ ସବୁଠାରୁ ମର୍ମନ୍ତୁଦ ଘଟଣା ।

ମାତା ଆଶାଲତା ଦେବୀ ସ୍ୱାମୀଙ୍କ ମୃତ୍ୟୁର ପ୍ରାୟ ଏକବର୍ଷ ପରେ ୧୯୪୨ ଏପ୍ରିଲ ମାସ ୨୦ ତାରିଖରେ ମୃତ୍ୟୁବରଣ କରିଥିଲେ । ବାପା-ମାଆ ଦୁହେଁ ଆଶା କରିଥିଲେ— ପିଲାମାନେ ଓଡ଼ିଆପ୍ରୀତିରେ ଉଦ୍‌ବୁଦ୍ଧ ହୋଇ ନିଜ ମାତୃଭୂମିର ଯଶ ବୃଦ୍ଧି କରନ୍ତୁ । ରକ୍ତ ଦାନ କରି ଦେଶମାତୃକାର ସେବା କରନ୍ତୁ । ସ୍ୱାଧୀନତା ସଂଗ୍ରାମୀ ପରିବାରରୁ ଆସିଥିବା ମାଆ ଆଶାଲତାଙ୍କର ଆଶା ଥିଲା— ଅସୁମାରି । ତାକୁ କ'ଣ ତାଙ୍କର ଉପଯୁକ୍ତ ଦାୟାଦମାନେ ପୂରଣ କରି ପାରିନାହାନ୍ତି ? ନିଶ୍ଚୟ, ତାଙ୍କର ସ୍ୱପ୍ନକୁ ସାର୍ଥକ କରିଛନ୍ତି କଳିଙ୍ଗର ଶେଷ ସମ୍ରାଟ— ବିଜୁ ପଟ୍ଟନାୟକ ।

## ବିଜୁବାବୁଙ୍କ ପିଲାଦିନ

କଟକର ତୁଳସୀପୁରଠାରେ ମୁନ୍‌ସିଫ ଲକ୍ଷ୍ମୀନାରାୟଣଙ୍କର ଘର । ଖୁବ୍ ନାମକରା ଟାଣୁଆ ମୁନସିଫ୍ । ନ୍ୟାୟ-ବିଗ୍ରରେ ସ୍ୱାଧୀନ ମତ ଦେଉଥିବାରୁ ତାଙ୍କର ଖାତିରି ବିଭିନ୍ନ ମହଲରେ ଚର୍ଚ୍ଚା ହେଉଥାଏ । ସେ ବ୍ରାହ୍ମଧର୍ମ ଗ୍ରହଣ କରିଥାନ୍ତି । ଅନ୍ଧବିଶ୍ୱାସ, କୁସଂସ୍କାର ଉପରେ ତାଂକର ଆଦୌ

ଆସ୍ଥା ନଥାଏ । କର୍ମ ହିଁ ଜୀବନ ଥିଲା— ତାଙ୍କ ଜୀବନର ମୂଳମନ୍ତ୍ର । ନିୟମିତ ପ୍ରାତଃ ଭ୍ରମଣ ଥାଏ— ତାଙ୍କର ଅଭ୍ୟାସ ।

ସେଦିନ ଥାଏ— ୧୯୧୬ ମସିହା ମାର୍ଚ୍ଚ ମାସର ପାଞ୍ଚ ତାରିଖ । ଲକ୍ଷ୍ମୀନାରାୟଣବାବୁ ବଡ଼ି ଭୋରୁ ଉଠି ପ୍ରାତଃ ଭ୍ରମଣରେ ବାହାରି ପଡ଼ିଥା'ନ୍ତି । ମହାନଦୀର ଧାରେ ଧାରେ ସେ ଆଗେଇ ଚ୍ଚାଲିଥା'ନ୍ତି । ତୁଳସୀପୁର ଘାଟ ପାଖରେ ପହଞ୍ଚି ଟିକେ ଅଟକିଗଲେ । ସେଇଠି ଜଣେ ବ୍ରାହ୍ମଣ ମନ୍ତ୍ରପାଠ କରି ସୂର୍ଯ୍ୟଙ୍କୁ ଜଳ ଟେକୁଥାନ୍ତି । ପୂର୍ବଦିଗରେ ବାଳସୂର୍ଯ୍ୟ ନାଲି ଟହ ଟହ ହେଇ ଆକାଶ ଉପରକୁ ଉଠି ଆସୁଥା'ନ୍ତି ।

ଜଣେ ଚ୍ଚାକର ଆସି ଲକ୍ଷ୍ମୀନାରାୟଣବାବୁଙ୍କୁ ଖବର ଦେଇ କହିଲା— 'ବାବୁ ! ଆପଣଙ୍କର ପୁଅଟିଏ ଜନ୍ମ ହେଇଛି ।'

ଜଳ ଟେକି ଦେଉଥିବା ବ୍ରାହ୍ମଣଜଣକ ପୁଅ ଜନ୍ମ ହେବା କଥା ଶୁଣି କହି ପକାଇଲେ— 'ସୂର୍ଯ୍ୟଙ୍କ ପରି ଆପଣଙ୍କ ପୁଅ ତେଜୀୟାନ ହେଉ' ।

ବ୍ରାହ୍ମଣଙ୍କର କଥା ଶୁଣି ଲକ୍ଷ୍ମୀନାରାୟଣବାବୁ କହିପକାଇଲେ— 'ସେତିକି ନୁହେଁ ନନା', ସେ ସ୍ୱାଧୀନତା ସଂଗ୍ରାମର ଜଣେ ବିଜୟୀ ସୈନିକ ହେଉ । ତେଣୁ ଏ ପୁଅର ନାଆଁ ହେଉ— ବିଜୟ । ବିଜୟଲାଭ କରି ସେ ଆନନ୍ଦ ପାଉ ।''

ବ୍ରାହ୍ମବେଳାରେ ଜନ୍ମଲାଭ କରିଥିବା ପୁଅର ନାମକରଣ ମହାନଦୀ କୂଳରେ ହିଁ ହୋଇଗଲା— ବିଜୟାନନ୍ଦ । ଚ୍ଚାକର ସହିତ ଲକ୍ଷ୍ମୀନାରାୟଣବାବୁ ତରବର ହେଇ ଘରକୁ ଚ୍ଚାଲିଲେ ।

ବିଜୟାନନ୍ଦଙ୍କ ଜନ୍ମସ୍ଥାନ ଓ ସମୟକୁ ନେଇ ଯେଉଁ ଜାତକ ତିଆରି କରାଯାଇଛି, ସେଥିରେ ଜ୍ୟୋତିର୍ବିଦ କହିଛନ୍ତି— ''ସେ ଜଣେ କ୍ଷଣଜନ୍ମା । ବହୁ କୀର୍ତ୍ତିର ଅଧିକାରୀ— ଜନପ୍ରିୟ ନେତା । ସେ ନିଜ ବଳରେ ବଳୀୟାନ । ନିଜ ବିକ୍ରମରେ ବିକ୍ରମୀ । ବହୁ କ୍ଷେତ୍ରରେ ଭାଗ୍ୟର ବିଡ଼ମ୍ବନା ହେତୁ ସେ ବହୁ

ସମସ୍ୟାର ସମ୍ମୁଖୀନ ହେଲେ ମଧ୍ୟ ନିଜ ବ୍ରତରୁ ବିରତ ହେବେ ନାହିଁ । ଉଚ୍ଚାଭିଳାଷ ସହ ଲୋକକଲ୍ୟାଣ ତଥା ଜନସେବା ହେବ ମୁଖ୍ୟ ।'' ମୋଟ-ଉପରେ କହିବାକୁ ଗଲେ ତାଙ୍କର ଜାତକ ହେଉଛି— ଏକ ପ୍ରଭାବଶାଳୀ ଜାତକ ଏବଂ ସେ ଜଣେ ଯୋଗଜନ୍ମା ପୁରୁଷ ବୋଲି ଜାତକରୁ ଜଣାପଡୁଥିଲା ।

ବାପା-ମାଆ, ଭାଇ-ଭଉଣୀଙ୍କ ମେଳରେ ଶିଶୁ ବିଜୁ ହସି ଖେଳି ମଜାମଉଜରେ ବଢୁଥା'ନ୍ତି । ତାଙ୍କୁ ଯେତେବେଳେ ଆଠବର୍ଷ ବୟସ ହେଇଥାଏ, ହଠାତ୍ କୌଣସି କାରଣରୁ ସେ ଅସୁସ୍ଥ ହୋଇପଡ଼ିଲେ । ଡାକ୍ତର ଆସି ଜାଣିଲେ, ପେଟ ଭିତରେ ତାଙ୍କର ଆପେଣ୍ଡିସ ହୋଇ କୌଣସି କାରଣରୁ ଫାଟିଯାଇଛି । ଏଭଳି ରୋଗୀଙ୍କୁ ବିନା ଅପରେସନରେ ବଞ୍ଚାଇ ରଖି ହେବନାହିଁ । ଜଣେ ଗୋରା ସର୍ଜନଙ୍କ ଦ୍ୱାରା ଅପରେସନ୍ କରି ବିଜୁଙ୍କ ଜୀବନକୁ ରକ୍ଷା କରାଯାଇ ପାରିଲା । ଡାକ୍ତର କହିଲେ— 'ଏଭଳି ଅବସ୍ଥାରେ ଖୁବ୍ କମ୍ ରୋଗୀ ବଞ୍ଚିଥାନ୍ତି । ଭଗବାନ୍‌ଙ୍କ ଦୟାରୁ ପିଲାଟା ବଞ୍ଚିଗଲା । ବୋଧହୁଏ 'ସେ' ଭବିଷ୍ୟତରେ ଏଇ ପିଲାଟି ଦ୍ୱାରା କିଛି ବଡ଼ କାମ କରେଇବେ ।'

ଡାକ୍ତରଙ୍କ ଅନୁମାନ ପରେ ସତ୍ୟରେ ପରିଣତ ହୋଇଥିଲା । ଏକମାସରୁ ଅଧିକ ସମୟ ବିଜୁବାବୁ କନିକା କଟେଜରେ ରହି ଚିକିତ୍ସିତ ହୋଇ ସୁସ୍ଥରେ ଘରକୁ ଫେରିଲେ । ଭଗବାନ୍‌ଙ୍କ ଦୟା ଓ ବାପାମାଆଙ୍କ ଆଶୀର୍ବାଦରୁ ସେ ଜୀବନକାଳ ମଧ୍ୟରେ ଅସଂଖ୍ୟ ବିପଦର ସମ୍ମୁଖୀନ ହେଇ ରକ୍ଷା ପାଇଯାଇଛନ୍ତି ।

ତାଙ୍କର ପାଠପଢା କଟକର ମିଶନ ପ୍ରାଥମିକ ବିଦ୍ୟାଳୟରେ ଆରମ୍ଭ ହୋଇଥିଲା । ପିଲାଦିନେ ବିଜୁବାବୁ ଅତ୍ୟନ୍ତ ଦୁର୍ବଳ ଚେହେରାର ଛାତ୍ର ଥିଲେ । ପାଠପଢ଼ା ସହିତ ଖେଳ ଏବଂ ସେବାକାର୍ଯ୍ୟରେ ସେ ଅଗ୍ରଣୀ ଥିଲେ । ତେଣୁ ଶିକ୍ଷକମାନେ ତାଙ୍କୁ ଅଧିକ ସ୍ନେହ କରୁଥିଲେ । ପିଲାଦିନରୁ ସେ ସାହସୀ ଓ ନିର୍ଭୀକ ଥିବାରୁ ଅନ୍ୟମାନେ ତାଙ୍କୁ ସ୍ୱତନ୍ତ୍ର ଭାବରେ ଶ୍ରଦ୍ଧା ବି କରୁଥିଲେ ।

ଅପରେସନ୍ ପରେ ବିଜୁବାବୁଙ୍କ ସ୍ୱାସ୍ଥ୍ୟରେ ପରିବର୍ତ୍ତନ ଘଟିଲା । ସବୁଥିରେ ଆଗୁଆ ଥିବାରୁ ସେ ସମସ୍ତଙ୍କର ଦୃଷ୍ଟିଆକର୍ଷଣ କଲେ । ମିଶନ ପ୍ରାଥମିକ ବିଦ୍ୟାଳୟରୁ ଶିକ୍ଷା ସମାପ୍ତ କରି ସେ ମିଶନ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲେ । ସେଇଠି ବିଜୁବାବୁଙ୍କ ସହିତ ସୁଦକ୍ଷ ଜଣେ ପ୍ରଧାନଶିକ୍ଷକଙ୍କର ଅପୂର୍ବ ମିଳନ ଘଟିଲା । ବିଦ୍ୟାଳୟର ପ୍ରଧାନଶିକ୍ଷକ ମହୋଦୟ କର୍ତ୍ତବ୍ୟପରାୟଣ, ଶିକ୍ଷାଦାନରେ ନିଷ୍ଠାପର, ଛାତ୍ରବତ୍ସଳ ତଥା ଦୂରଦୃଷ୍ଟି-ସମ୍ପନ୍ନ ଥିଲେ । ତେଣୁ ପ୍ରତ୍ୟେକ ଛାତ୍ର ତାଙ୍କୁ ଦେବତା ଭଳି ମାନୁଥିଲେ । ସୁଦକ୍ଷ ପ୍ରଧାନଶିକ୍ଷକ ବିଜୁବାବୁଙ୍କର ପ୍ରତିଭାକୁ ଦେଖି ତାର ବିକାଶ ପାଇଁ ଧ୍ୟାନ ଦେଲେ । ତାଙ୍କୁ ଉତ୍ସାହିତ କଲେ । ଫଳରେ ଖେଳ-କସରତ, ସ୍କାଉଟ, ନଈ ପହଁରା ସବୁଥିରେ 'ବିଜୁ' ନାମ ଅଗ୍ରଗଣ୍ୟ ହେଲା । ଏଭଳି ଛାତ୍ରକୁ ପାଇ ଶିକ୍ଷକମାନେ ନିଜକୁ ଗର୍ବିତ ମନେକଲେ । ୧୯୨୭ ମସିହାରେ ପ୍ରଧାନଶିକ୍ଷକ ମିଲ୍‌ମ୍ୟାନ୍ ସାହେବ ବ୍ୟକ୍ତିଗତ ଅସୁବିଧା କାରଣରୁ ବିଦ୍ୟାଳୟ ଛାଡ଼ି ଚାଲିଯିବାରୁ ସେ ବିଦ୍ୟାଳୟରେ ଆଉ ପୂର୍ବଭଳି ଶୃଙ୍ଖଳା ରହିପାରିଲା ନାହିଁ । ଫଳରେ ବିଜୁବାବୁଙ୍କୁ ତାଙ୍କର ବାପା ସେ ସ୍କୁଲରୁ ନେଇଆସି ରେଭେନ୍ସା କଲେଜିଏଟ୍ ହାଇସ୍କୁଲରେ ନାମ ଲେଖାଇଦେଲେ । ଦୁଇଭାଇଙ୍କୁ ଦୁଇଟି ନୂଆ ସାଇକେଲ ମିଳିଯାଇଥାଏ । ଜର୍ଜବାବୁ ଓ ବିଜୁବାବୁଙ୍କ ଆନନ୍ଦ କହିଲେ ନସରେ । ନୂଆ ସ୍କୁଲରେ ଦୁହେଁ ମନଦେଇ ପାଠ ପଢ଼ିଲେ । ବିଜୁବାବୁଙ୍କ ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ସୁପ୍ତ ପ୍ରତିଭା ଜାଗ୍ରତ ହେବାରେ ଲାଗିଲା । ଅଳ୍ପ କେଇଟା ଦିନ ମଧ୍ୟରେ ବିଜୁବାବୁ କଲେଜିଏଟ୍ ସ୍କୁଲର କେନ୍ଦ୍ରବିନ୍ଦୁ ହୋଇଉଠିଲେ । ୧୯୩୨ ମସିହାରେ ସେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଏଣ୍ଟ୍ରାନ୍ସ ପରୀକ୍ଷା ଦେଇ ପ୍ରଥମଶ୍ରେଣୀରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ । ତାପରେ ସେ ରେଭେନ୍ସା କଲେଜରେ ପାଠପଢ଼ିବାର ସୁଯୋଗ ପାଇଲେ । ନିଜ ଗୁଣରେ ସେ ରେଭେନ୍ସା କଲେଜର ସମସ୍ତ ରେକର୍ଡ ଭଙ୍ଗକଲେ ।

# ବିଜୁବାବୁଙ୍କ ଦେଶପ୍ରୀତି ଜାଗ୍ରତ ହେଲା

୧୯୨୬ ମସିହାର କଥା । ମହାତ୍ମାଗାନ୍ଧୀ କଟକର ସ୍ୱରାଜ ଆଶ୍ରମକୁ ଆସିଥାନ୍ତି । ସେତେବେଳକୁ ବିଜୁବାବୁ ମିଶନ ସ୍କୁଲ ଛାଡ଼ି ରେଭେନ୍ସା କଲେଜିଏଟ୍ ହାଇସ୍କୁଲରେ ନାମ ଲେଖାଇ ସାରିଥାନ୍ତି । ସେ ମହାତ୍ମାଗାନ୍ଧୀଙ୍କୁ ଦେଖିବାକୁ ଧାଇଁଲେ ସ୍ୱରାଜ ଆଶ୍ରମକୁ । ଜନସମୁଦ୍ରର ଭିଡ଼କୁ ଠେଲି ସେ ଆଗକୁ ଆଗକୁ ଚାଲିଥା'ନ୍ତି । ଯଦି ସୁବିଧା ମିଳେ, ଗାନ୍ଧିଜୀଙ୍କ ସଙ୍ଗେ ପଦେ କଥା ହେବାକୁ ତାଙ୍କର ଭାରି ଇଚ୍ଛା । ତାଙ୍କ ସହିତ ହାତ ମିଳେଇ ପାରିଲେ ତ ଆହୁରି ଭଲକଥା ।

ଦୂରରୁ ଗୋରା ପୋଲିସ ଅଧ୍ୟକ୍ଷ ଦେଖିଲେ, ଡେଙ୍ଗାପିଲାଟା ଜବରଦସ୍ତ କରି ଆଗକୁ ଠେଲି ଚାଲିଛି । ସେ ଇସାରା ଦେଇ ବିଜୁବାବୁଙ୍କୁ ଅଟକି ଯିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ବିଜୁବାବୁ ସହଜରେ ମାନିବା ପିଲା ନୁହେଁ । ସେ ଗୋରା ପୋଲିସ ସାହେବଙ୍କୁ ବେଖାତିର କରି ଆହୁରି ଅଧିକ ଆଗ୍ରହରେ ଆଗକୁ ଠେଲିହେଇ ଚାଲିଲେ । ଫଳରେ ସାହେବଙ୍କର ରାଗ ବଢ଼ିଗଲା, ସେ ନିଜ ହାତବାଡ଼ିରେ ବିଜୁବାବୁଙ୍କ ମୁଣ୍ଡରେ ଏକ ଶକ୍ତ ପାହାର ବସେଇଦେଲେ । ଧାର ଧାର ହୋଇ ରକ୍ତ ବହିଲା । ଗାନ୍ଧିଜୀ ଧାଇଁଯାଇ ବିଜୁବାବୁଙ୍କ ମୁଣ୍ଡର ରକ୍ତ ପୋଛି ପକାଇଲେ । ବ୍ୟଥାରେ ତାଙ୍କ ଆଖି ଛଳଛଳ ହେଇଗଲା । ସେ ଗୋରା ପୋଲିସଙ୍କୁ ଖୁବ୍ ଧିକ୍କାର କଲେ । ଗାନ୍ଧିଜୀଙ୍କ ହାତର ସ୍ପର୍ଶ ପାଇ ବିଜୁବାବୁ କିଭଳି ଏକ ଶିହରଣ ଅନୁଭବ କରିଥିଲେ । ଚରମ ସନ୍ତୋଷରେ ସେ ବିହ୍ୱଳ ହୋଇପଡ଼ିଥିଲେ । ବୋଧହୁଏ— ସେହିଦିନ ବିଜୁବାବୁ ମନେମନେ ସ୍ଥିର କରିଥିଲେ, ସ୍ୱାଧୀନତା ସଂଗ୍ରାମରେ ସେ ଝାସ-ଦେଇ ଦେଶମାତୃକାର ସେବା କରିଚାଲିବେ ।

ବାପାମାଆଙ୍କଠାରୁ ହେଉ କିମ୍ବା ପାରିପାର୍ଶ୍ୱିକ ପରିସ୍ଥିତିରୁ ହେଉ, ବିଜୁବାବୁ ବୁଝିନେଇଥିଲେ, ଇଂରେଜମାନେ ହେଉଛନ୍ତି— ଆମ ଦେଶର ଶତ୍ରୁ । ତେଣୁ ସେ ଗୋରାସାହେବମାନଙ୍କୁ ମୋଟେ ପସନ୍ଦ କରୁନଥିଲେ । ଥରେ ସେ ଛାତ୍ର ଅବସ୍ଥାରେ ଦଳେ ଇଂରେଜ ପୋଲିସଙ୍କୁ ଦେଖି ଟେକା ପଥର ଫୋପାଡ଼ି ଲୁଚି ଯାଇଥିଲେ । ପିଲାଟିବେଳୁ ବିଜୁବାବୁଙ୍କ ମନରେ ସ୍ୱାଧୀନତା ପାଇବାର ଆଶା ସୃଷ୍ଟି ହୋଇଥିଲା । ତେଣୁ ସେ କେବଳ ସୁଯୋଗ ଅପେକ୍ଷାରେ ଥାଆନ୍ତି । କେବେ ସୁବିଧା ମିଳିଗଲେ ସେ ଗୋରାମାନଙ୍କ ବିରୋଧରେ ଲଢ଼ିଯାଆନ୍ତେ ।

## ବିଜୁବାବୁଙ୍କ ସାଇକେଲ ଯାତ୍ରା

ରେଭେନ୍ସା କଲେଜରେ ଛାତ୍ର ଥିବା ଅବସ୍ଥାରେ ବିଜୁବାବୁ ସମସ୍ତଙ୍କର ଦୃଷ୍ଟିଆକର୍ଷଣ କରିସାରିଥା'ନ୍ତି । ଖେଳକୁଦ, ପାଠପଢ଼ା ସବୁଥିରେ ସେ ଆଗୁଆ । ସବୁପ୍ରକାର ଦୁଃସାହସିକ କାର୍ଯ୍ୟରେ ମଧ୍ୟ ବିଜୁବାବୁଙ୍କର ପସନ୍ଦ ଥାଏ । ସେ ଜାଣିଥିଲେ — ତାଙ୍କ ବାପା ଶଗଡ଼ଗାଡ଼ିରେ ବସି ଭଞ୍ଜନଗରରୁ ସମ୍ବଲପୁର ଯାଇଥିଲେ । ବିପଦଶଙ୍କୁଳ ଅଜଣା ରାସ୍ତାରେ ଯିବାବେଳେ ନିଶ୍ଚୟ କେତେକ ନୂଆ ଅଭିଜ୍ଞତା ତାଙ୍କୁ ମିଳିଥିବ । ଏ ସବୁ ଭାବୁ ଭାବୁ ବିଜୁବାବୁ ଥରେ ସାଙ୍ଗମାନଙ୍କ ସହିତ ଏକଥା ଆଲୋଚନା କଲେ । ପ୍ରଥମବର୍ଷର ପରୀକ୍ଷା ଶେଷ ହେଇଥାଏ । ବିଜୁବାବୁଙ୍କର ଅନ୍ତରଙ୍ଗ ବନ୍ଧୁ, ଅମର ଦେ ପ୍ରସ୍ତାବ ଦେଲେ, "ଆମେ ଏହିପରି ଗୋଟାଏ ଦୁଃସାହସିକ ଯାତ୍ରା ଆରମ୍ଭ କଲେ କେମିତି ହୁଅନ୍ତା ?" ବିଜୁବାବୁ କ'ଣ କେବେ ପଛଘୁଞ୍ଚା ଦେଇପାରିବେ ? କଥାଟା ପକ୍କା ହେଇଗଲା ।

ଦିନେ ସନ୍ଧ୍ୟାରେ ମହାନଦୀ ବାଲି ଉପରେ ବସି ତିନିବନ୍ଧୁ ଶପଥ କଲେ, ଯେତେ କଷ୍ଟସାଧ୍ୟ ହେଉ ପଛେ ସାଇକେଲରେ ସେମାନେ ପେଶୱାର ଯିବେ । ବିଭିନ୍ନପ୍ରକାର ନୂଆ ଅଭିଜ୍ଞତା ଅର୍ଜନ କରିବେ । ଏଇ ଆଶାନେଇ ବିଜୁବାବୁ, ଭ୍ରମରବର ସାହୁ ଓ ଅମର ଦେ ଅନେକ ସ୍ୱପ୍ନ ଦେଖି ନିଜକୁ ପ୍ରସ୍ତୁତ କରିନେଲେ । ସାଇକେଲରେ ଦୁର୍ଗମ ସୁଦୂର ପେଶୱାରକୁ ଯିବା ସେତେବେଳେ ଏତେ ସହଜ କାମ ନଥିଲା । ସେଥିପାଇଁ ବିଜୁବାବୁଙ୍କ ବାପା ଯଥେଷ୍ଟ ଉତ୍ସାହ ଦେଇଥିଲେ ।

ବିଜୁବାବୁଙ୍କ ନେତୃତ୍ୱରେ ଅଭିଯାନ ଆରମ୍ଭ ହେଲା । କଟକଚଣ୍ଡୀଙ୍କ ଆଶୀର୍ବାଦ ନେଇଥିବାରୁ ସେମାନେ ନିର୍ଭୟରେ ଆଗେଇ ଚାଲିଥା'ନ୍ତି— ଜଗନ୍ନାଥ ମହାପ୍ରଭୁଙ୍କର ଜୟଧ୍ୱନି ଦେଇ ମନର ବଳ ବଢ଼ାଉଥା'ନ୍ତି । ଓଡ଼ିଆ ଜାତିର ବୀରତ୍ୱ, ଓଡ଼ିଶାର ପାଇକମାନଙ୍କ ସାହସ କଥା ମନେପକାଇ ଦେଇ ବିଜୁବାବୁ ଅନ୍ୟମାନଙ୍କୁ ସାହସ ଦେଉଥା'ନ୍ତି । ଅନେକପ୍ରକାର ସମସ୍ୟାର ସମ୍ମୁଖୀନ ହେଇ ସେମାନେ ଆଗେଇ ଚାଲିଥା'ନ୍ତି । କେତେବେଳେ ଗୀତ ଗାଇ ଗାଇ ତ ପୁଣି କେତେବଳେ ହସ ମଜା ଗପ କୁହା କୁହି ପୁଣି କେତେବେଳେ ଗଛମୂଳେ ବିଶ୍ରାମ । ଏଇମିତି ଚାଲିଥାଏ । ଥରେ ସେମାନେ ବାଟରେ ଗୋଟାଏ ବାଘକୁ ଭେଟିଲେ ! ସମସ୍ତେ ଡରି-ଯାଇଥିଲେ, ବିଜୁବାବୁ କହିଲେ— "ଭୟ କରନାହିଁ । ଏଇଟା ମଣିଷଖିଆ ବାଘ ନୁହେଁ । ତମେ ବାଘର ଆଖି ସହିତ ନିଜ ଆଖି ମିଶାଇ ତାକୁ ଚାହିଁରୁହ, ସେ ନିଶ୍ଚୟ ପଳାଇଯିବ । ଯଦି ସେ ନଯାଏ, ତେବେ ଅବସ୍ଥା ଦେଖି ବ୍ୟବସ୍ଥା କରିବା । ଭୟ କରିଗଲେ, ସେ ଆମକୁ ଆକ୍ରମଣ କରିପାରେ । ଦରକାର ପଡ଼ିଲେ ଆମକୁ ବାଘ ଉପରେ ଆକ୍ରମଣ କରିବାକୁ ପଡ଼ିପାରେ ।"

କିଛି ସମୟ ବାଘଟି କଟମଟ କରି ତିନିବନ୍ଧୁଙ୍କୁ ଚାହିଁ ରହିଲା । ପୁଣି ନିଜ ବାଟରେ ସେ ଚାଲିଗଲା । ତିନିବନ୍ଧୁ ଜୟ ଜଗନ୍ନାଥ— ଜୟ ଜଗନ୍ନାଥ

ଧ୍ୱନିରେ ବଣଭୂଇଁକୁ କମ୍ପାଇଦେଲେ । ଅନେକ କଷ୍ଟସହି ବହୁ ସମସ୍ୟାର ସମ୍ମୁଖୀନ ହୋଇ ତିନିବନ୍ଧୁ ପେଶୱାରରେ ପହଞ୍ଚିଗଲେ । ସେଠାରେ ସେମାନେ ବିଭିନ୍ନ ଦର୍ଶନୀୟ ସ୍ଥାନ ଭ୍ରମଣ କଲେ । ବିଭିନ୍ନ ତଥ୍ୟ ସଂଗ୍ରହ କଲେ । ସେତେବେଳେ ବନ୍ଧୁ ଅମର ଦେ ରୟାଲ ଏୟାର ଫୋର୍ସରେ ଚାକିରି ପାଇଯିବାରୁ ଦୁଇବନ୍ଧୁଙ୍କୁ ବିଦାୟ ଦେଇ ନିଜର କର୍ମସ୍ଥଳକୁ ଚାଲିଗଲେ। ବିଜୁବାବୁ ଓ ଭ୍ରମରବାବୁ ସାଇକେଲରେ କଟକ ଫେରିଆସିଲେ । ତାଙ୍କୁ କଟକରେ ଆତ୍ମୀୟସ୍ୱଜନମାନଙ୍କ ତରଫରୁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା ।

## ଉଡ଼ାଜାହାଜରେ ବିଜୁବାବୁ

ପିଲାଦିନୁ ବିଜୟାନନ୍ଦ ନିଜ ସାଙ୍ଗସାଥୀମାନଙ୍କ ମହଲରେ ବିଜୁବାବୁ ବୋଲି ପରିଚିତ । କାରଣ ନିଜ ସହପାଠୀମାନଙ୍କ ମଧ୍ୟରେ ସେ ଥିଲେ ସବୁଠାରୁ ଡେଙ୍ଗା ଓ ବଳିଷ୍ଠ ।ସେ ଯେମିତି ଜିଦ୍‌ଖୋର ପୁଣି ସେମିତି ସରଳ। ତେଣୁ ଭୟରେ ହେଉ କିମ୍ବା ସମ୍ମାନ ଦେଖେଇ ହେଉ ସମସ୍ତେ ତାଙ୍କୁ ବିଜୁବାବୁ ବୋଲି ସମ୍ବୋଧନ କରୁଥିଲେ । ତାଙ୍କ ଜିଦ୍‌ଖୋର ସ୍ୱଭାବର ନମୁନା ପିଲା-ଦିନର ଗୋଟିଏ ଦୃଷ୍ଟାନ୍ତରୁ ସ୍ପଷ୍ଟ ଅନୁମାନ କରିହୁଏ । ସ୍କୁଲରେ ପାଠ ପଢ଼ିଲାବେଳେ କଟକର ବାଲିଯାତ୍ରା ପଡ଼ିଆରେ ଆସି ଛୋଟ ବିମାନଟିଏ ଓହ୍ଲାଇଥାଏ । ବିମାନଟା କିଭଳି ଜିନିଷ— ସେ ପୁଣି ଆକାଶରେ ପକ୍ଷୀଭଳି ଉଡ଼ିପାରୁଛି, ତାକୁ ଦେଖିବାକୁ କଟକ ସହରରେ ଲୋକଙ୍କ ସୁଅ ଛୁଟିଲା । 'ବାଲିଯାତ୍ରା ପଡ଼ିଆରେ ସତେକି ଆଜି ଯାତ୍ରା ହେଉଛି !' ଗୋରା ସାହେବଙ୍କର ସେହି ବିମାନଟିକୁ ଲାଠିଧରି ପୋଲିସବାହିନୀ ଗୋଲେଇ କରି ଜଗିଥାଆନ୍ତି ।

କୌତୂହଳୀ ବାଳକ ବିଜୁ ତାଙ୍କ ଭାଇ ଓ ଅନ୍ୟ ସାଙ୍ଗମାନଙ୍କ ସହିତ ସେହି ବିମାନ ଦେଖିବାକୁ ବାଲିଯାତ୍ରା ପଡ଼ିଆକୁ ଧାଇଁଲେ । ସାଙ୍ଗମାନେ ବିଜୁଙ୍କୁ ଉସୁକେଇ ଦେଇ ବିମାନଟିକୁ ଛୁଇଁବା ପାଇଁ କହିଲେ । ଜିଦ୍‌ଖୋର-ସାହସୀ ବିଜୁ ହଠାତ୍ ପୋଲିସ ଘେର ଭିତରକୁ ଦୌଡ଼ିଯାଇ ବିମାନଟିକୁ ହାତମାରି ସେଇଠି ଠିଆ ହେଇ ରହିଲେ। ଦୁଷ୍ଟପିଲାକୁ ଘଉଡ଼େଇ ଦେବାପାଇଁ ପୋଲିସମାନେ ତାଙ୍କୁ ଲାଠିରେ ପିଟି ପକାଇଲେ । ଅବିଚଳିତ ବିଜୁ ମାଡ଼ଖାଇ କାଳେ ସେଦିନ ସେଇଠି ଶପଥ ନେଇଥିଲେ, ବଡ଼ହେଲେ ସେ ଦିନେ ଏଇ ବିମାନରେ ବସି ଆକାଶରେ ଉଡ଼ିବେ । ପାଇଲଟ୍ ହେବେ, ପରବର୍ତ୍ତୀ କାଳରେ ତାହାହିଁ ହେଇଥିଲା ।

ଦୁଃସାହସିକ କାମରେ ବିଜୁଙ୍କର ସବୁବେଳେ ପସନ୍ଦ ଥାଏ । ରେଭେନ୍ସା କଲେଜରେ ପଢୁଥିଲାବେଳେ ସେ ଯେଉଁ ଦୁଃସାହସିକ ସାଇକେଲ ଯାତ୍ରାରେ ଅନୁଭୂତି ଅର୍ଜନ କରିଥିଲେ, ତାକୁ ସମ୍ବଳ କରି ସେ ଆହୁରି କିଛି ଦୁଃସାହସିକ କାମ କରିବାକୁ ସବୁବେଳେ ସୁଯୋଗ ଖୋଜୁଥାଆନ୍ତି ।

କଥାରେ ଅଛି— 'ମନ ଥିଲେ ସୁଯୋଗ ବଳେ ବଳେ ଆସି ପହଞ୍ଚେ' । ବିଜୁଙ୍କ କ୍ଷେତ୍ରରେ ତାହା ହିଁ ହେଲା । ସାଇକେଲରେ ପେଶୱାର ଯାତ୍ରା କାଳରେ ସାଥୀ ଅମର ଦେ ରୟାଲ୍ ଏୟାର ଫୋର୍ସରେ ଚାକିରି ପାଇଯିବାରୁ ବିଜୁବାବୁଙ୍କ ବିମାନଚାଳନା କଥା ମନେ ପଡ଼ିଯାଇଥିଲା ।

ଆଇ.ଏସ୍.ସି. ପରୀକ୍ଷା ଦେଇସାରିବା ପରେ ବିଜୁବାବୁଙ୍କ ମନରେ ଉଡ଼ାଜାହାଜ ଚାଳନା ଶିକ୍ଷା ପାଇଁ ପ୍ରବଳ ଆଗ୍ରହ ସୃଷ୍ଟି ହେଲା । ବନ୍ଧୁ ଅମର ଦେ ଚିଠିଦ୍ୱାରା ବିଜୁବାବୁଙ୍କୁ ଏ ଦିଗରେ ଅଧିକରୁ ଅଧିକ ଉତ୍ସାହିତ କରୁଥା'ନ୍ତି ।

ସେତେବେଳେକୁ ବିଜୁବାବୁଙ୍କ ବାପା ଲକ୍ଷ୍ମୀନାରାୟଣବାବୁ ମୁନସିଫ୍ ଚାକିରିରୁ ଅବସର ନେଇସାରିଥାନ୍ତି । କଟକରେ ଆନନ୍ଦଭବନ ଘର ତିଆରି କରିସାରିବା ପରେ ତାଙ୍କର ଆର୍ଥିକ ପରିସ୍ଥିତି ଅତ୍ୟନ୍ତ ଶୋଚନୀୟ

ହୋଇପଡ଼ିଥାଏ । ପେନ୍‌ସନ ଟଙ୍କାରେ ଏତେବଡ଼ ପରିବାରର ସମସ୍ତ ଖର୍ଚ୍ଚ ବହନ କରିବା କଷ୍ଟକର ହେଇପଡୁଥାଏ । ଘରର ସବୁ ଆର୍ଥିକ ଅବସ୍ଥାକୁ ବିଜୁବାବୁ ଠିକ୍ ଭାବରେ ବୁଝିପାରୁଥା'ନ୍ତି । ଏଣେ ବିମାନଗ୍ଚଳନା ଶିକ୍ଷା ଯେ ଖୁବ୍ ବ୍ୟୟସାପେକ୍ଷ ବ୍ୟାପାର— ଏକଥାକୁ ମଧ୍ୟ ସେ ଜାଣିଥାଆନ୍ତି । ପୁଣି ମନରେ ପ୍ରବଳ ଆଗ୍ରହ । କ'ଣ କରିବେ ସ୍ଥିର କରିପାରୁନଥା'ନ୍ତି, ତଥାପି ସେ ବାପାଙ୍କ ଆଗରେ ନିଜର ମନକଥାକୁ ପ୍ରକାଶ କରିଦେଲେ ।

ଲକ୍ଷ୍ମୀନାରାୟଣବାବୁ ଥିଲେ ଭିନ୍ନ ଉପାଦାନରେ ଗଢ଼ା ମଣିଷ । ସେ କାହାରି ମନରେ କଷ୍ଟ ଦେବାକୁ ଇଚ୍ଛା କରନ୍ତି ନାହିଁ । ପିଲାମାନଙ୍କର ଉଚ୍ଚାଭିଳାଷକୁ ସାକାର କରିବାକୁ କେବେ ବି ପଛଘୁଞ୍ଚା ଦେଇନାହାନ୍ତି । କିନ୍ତୁ ବର୍ତ୍ତମାନର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଖରାପ । କ'ଣ କରାଯାଇପାରିବ । ବିଜୁକୁ ଯେମିତି ହେଲେ ବିମାନ ଶିକ୍ଷା ଦେବାକୁ ପଡ଼ିବ । ସେ ଚିନ୍ତିତ ହୋଇପଡ଼ିଲେ । ତଥାପି ବିଜୁବାବୁଙ୍କୁ ଭରସା ଦେଇ କହିଲେ— "ମୁଁ ଟଙ୍କା ଯୋଗାଡ କରୁଛି, ନିରାଶ ହେବାର କିଛି ନାହିଁ । ଅନ୍ୟାନ୍ୟ ପ୍ରାରମ୍ଭିକ କାମ ଆରମ୍ଭ କର । ଟଙ୍କାର ଅଭାବ ହେବନାହିଁ ।"

ପୁଅକୁ ସେଠାରୁ ବିଦା କରିଦେଇ ଲକ୍ଷ୍ମୀନାରାୟଣବାବୁ ଚିନ୍ତାମଗ୍ନ ହେଲେ । ଏତେ ଟଙ୍କା ଆସିବ କେଉଁଠୁ ? ଏଣେ ବଡ଼ପୁଅ ମେଡିକାଲ କଲେଜର ଛାତ୍ର । ତା' ପାଇଁ ପ୍ରଚୁର ଟଙ୍କା ଦରକାର । ସେ ବଡ଼ପୁଅ ଜର୍ଜକୁ ଡାକି ନିଜର ବ୍ୟାକୁଳତା ତଥା ଆର୍ଥିକ ଅବସ୍ଥା କଥା ଆଲୋଚନା କଲେ । ଜର୍ଜବାବୁ ବାପାଙ୍କର ଏଭଳି ଅବସ୍ଥା ଦେଖି ଆନନ୍ଦଭବନକୁ ବିକ୍ରି କରିବାକୁ ପରାମର୍ଶ ଦେଲେ । ଜର୍ଜଙ୍କର ପରାମର୍ଶ ଶୁଣି ଲକ୍ଷ୍ମୀନାରାୟଣବାବୁ ନିର୍ବାକ୍ ହେଇଗଲେ । ଅତି କରୁଣ ଭାବରେ ପୁଅ ମୁହଁକୁ ଗ୍ଚହିଁ କହିଲେ—"ନା' ସେ କଥା ହେଇପାରିବ ନାହିଁ । ଘରଟି ବିକ୍ରି କରିଦେଲେ ତମେ ସବୁ ରହିବ କେଉଁଠି ? ଏଥିପାଇଁ ମୋର ତ କିଛି ଦାୟିତ୍ୱ ଅଛି । ଘର ବିକ୍ରି ହେବନାହିଁ;

କିନ୍ତୁ ବିଜୁର ପାଇଲଟ୍ ଟ୍ରେନିଂ ହେବ । ଠାକୁରଙ୍କ ପାଖରେ ମୋର ଗଭୀର ବିଶ୍ୱାସ ଅଛି । ସେ ନିଶ୍ଚୟ କିଛି ଗୋଟାଏ ଉପାୟ ବତେଇଦେବେ ।''

ଏଇ ଅଳ୍ପ କେଇଟା ଦିନ ଭିତରେ ଲକ୍ଷ୍ମୀନାରାୟଣବାବୁ ଖିଆପିଆ ଭୁଲିଗଲେଣି । କେବଳ ଗୋଟାଏ ଚିନ୍ତା— ବିଜୁ କେମିତି ପାଇଲଟ୍ ଟ୍ରେନିଂ ପାଇପାରିବ । ଏତେ ଟଙ୍କା ଲେଖା ତିନିବର୍ଷ ପର୍ଯ୍ୟନ୍ତ ଦେଇପାରିବେ କେମିତି ? ଘରର ମୁରବି ଯେତେବେଳେ ଏଭଳି ଦୁଶ୍ଚିନ୍ତାରେ ଅଛନ୍ତି— ଅନ୍ୟମାନଙ୍କ ଉପରେ ତାର ଗଭୀର ପ୍ରଭାବ ପଡୁଥାଏ । ଆଶାଲତା ଦେବୀ ସ୍ୱାମୀଙ୍କର ଅସହାୟତାକୁ ଦେଖି ଦୁଃଖରେ ଭାଙ୍ଗିପଡୁଥା'ନ୍ତି । ଭଗବାନ୍‌ଙ୍କ ଠାରେ ପ୍ରାର୍ଥନା କରିବା ଛଡ଼ା ତାଙ୍କର ଅନ୍ୟ ଉପାୟ ନଥାଏ । ଜର୍ଜବାବୁ ମାଆଙ୍କ ପାଖରେ ବସି ବାପାଙ୍କ ଆଗରେ ଏଇଭଳି ଅର୍ଥଚିନ୍ତା ସଂପର୍କରେ ଆଲୋଚନା କରୁଥାନ୍ତି । ଡାକରୁ ଚିଠିଖଣ୍ଡିଏ ଆସି ପହଞ୍ଚିଲା । ଅବିଚଳିତ ଭାବରେ ଲକ୍ଷ୍ମୀନାରାୟଣବାବୁ ଚିଠିଖଣ୍ଡିକୁ ଖୋଲି ପକାଇ ଆନନ୍ଦରେ ବିହ୍ୱଳିତ ହୋଇପଡ଼ିଲେ । ତାଙ୍କ ପାଟିରୁ ବାହାରିପଡ଼ିଲା—''ପ୍ରଭୁ ତୁମେ ବଡ଼ଲୋକ ! ତୁମକୁ ବୁଝିନପାରି ଆମେ ଭ୍ରାନ୍ତ ମଣିଷ, କେତେ କ'ଣ ଭାବିଯାଉ ।'' ଆଖିରୁ ତାଙ୍କର କୃତଜ୍ଞତାର ଅଶ୍ରୁ ଧାର ଧାର ହେଇ ବହିପଡ଼ିଲା । କି ଆଶ୍ଚର୍ଯ୍ୟ !— ତିନିବର୍ଷ ପାଇଁ ପାରଳାର ମହାରାଜା ତାଙ୍କୁ ମାସିକ ୧୨୦୦ ଟଙ୍କା ଦରମାରେ ଦେୱାନ ଭାବରେ ନିଯୁକ୍ତି ପତ୍ର ଦେଇଛନ୍ତି । ଏ' ହେଉଛି ଭଗବାନ୍‌ଙ୍କର ଆଜ୍ଞାପତ୍ର ।

ବିଜୁବାବୁଙ୍କ ସ୍ୱପ୍ନ ସାର୍ଥକ ହେଲା । ସେ ମାସିକ ଏକହଜାର ଟଙ୍କା ଲେଖାଏଁ ନେଇ ୩୬ ମାସରେ ନିଜର ବିମାନ ଚାଳକ ତାଲିମ୍ ଶେଷ କଲେ । ନିଜର ଦୁଃସାହସିକତା ପାଇଁ ସେ ଅନ୍ୟ ଶିକ୍ଷାନବୀଶ୍‌ମାନଙ୍କ ନିକଟରେ 'ଦି ଗ୍ରେଟ୍ ପଟ୍ଟନାୟକ' ଭାବରେ ପରିଚିତ ହୋଇଥିଲେ । ସେତେବେଳେ ଆଜିକାଲି ପରି ବିମାନରେ ଏତେ ଉନ୍ନତି ଘଟି ନଥିଲା । ବିମାନର ସିଲିଂ ବା ଛାତ ବି ନଥିଲା । ତେଣୁ ବିମାନଚାଳକମାନେ ବହୁ ଅସୁବିଧାର ସମ୍ମୁଖୀନ

ହେଉଥିଲେ । ଦୁର୍ଘଟଣା ମଧ୍ୟ ଘଟୁଥିଲା । ବିଜୁବାବୁଙ୍କର ବିମାନ ମଧ୍ୟ ଏହିପରି ପରିସ୍ଥିତିରେ ଥରେ ଦୁର୍ଘଟଣାର ସମ୍ମୁଖୀନ ହେଇଥିଲା; କିନ୍ତୁ ଭଗବାନ୍ଙ୍କ ଅପାର କରୁଣାରୁ ସେ ଆଶ୍ଚର୍ଯ୍ୟଜନକ ଭାବେ ନିଜକୁ ଅକ୍ଷତ ଅବସ୍ଥାରେ ରକ୍ଷା କରିପାରିଥିଲେ ।

କୃତିତ୍ୱର ସହିତ ପାଇଲଟ୍ ଟ୍ରେନିଂ ଶେଷ କରିବା ପରେ ବିଜୁବାବୁଙ୍କୁ ଗୋଭାନ୍ ବ୍ରଦର୍ସ ଦ୍ୱାରା ପରିଚ୍ଳିତ ଇଣ୍ଡିୟାନ୍ ନେସ୍‌ନ୍ୟାଲ୍ ଏୟାରୱେ଼ଜ୍‌ରେ ନିଯୁକ୍ତି ମିଳିଥାଲା । ଏତେଦିନ ପରେ ସେ ତାଙ୍କ ମନପସନ୍ଦର ଚାକିରି ପାଇଗଲେ । ମୁକ୍ତ ଆକାଶର ଆନନ୍ଦବିହ୍ୱଳ ବିହଙ୍ଗ ପରି ସେ ଆକାଶରେ ଉଡ଼ି ବୁଲିଲେ । ମନଲାଖି ଚାକିରି ସହିତ ପ୍ରଚୁର ସମ୍ମାନ, ବଡ଼ ବଡ଼ ଲୋକମାନଙ୍କ ସହିତ ମିଳିବାର ସୁଯୋଗ ଏବଂ ଯଥେଷ୍ଟ ପରିମାଣରେ ଦରମା ପାଇ ବିଜୁବାବୁ ନିଜ ସ୍ୱପ୍ନକୁ ସାର୍ଥକ କଲେ ।

## ବିଜୁବାବୁଙ୍କ ବିବାହ

ବିଜୁବାବୁ ଇଣ୍ଡିୟାନ ନେସ୍‌ନ୍ୟାଲ୍ ଏୟାର ୱେଜ୍‌ରେ ଜଣେ ପାଇଲଟ ବା ବୈମାନିକ ଭାବେ ଚାକିରି କରୁଥିବାବେଳେ ଜଣେ କାଶ୍ମୀର ଯୁବ-ପାଇଲଟ୍‌ଙ୍କ ସହ ତାଙ୍କର ବନ୍ଧୁତା ସୃଷ୍ଟି ହେଲା । ସେହି ବନ୍ଧୁଙ୍କ ସହିତ ବିଜୁବାବୁ ମଝିରେ ମଝିରେ କାଶ୍ମୀର ଯାଆନ୍ତି । ବନ୍ଧୁଙ୍କର ଜଣେ ଶାଳୀ ଜ୍ଞାନଦେବୀଙ୍କ ସହ ବିଜୁବାବୁଙ୍କର ପରିଚୟ ହେଲା । ଏହି ପରିଚୟ ଧୀରେ ଧୀରେ ଘନିଷ୍ଠରୁ ଘନିଷ୍ଠତର ହେଲା । ଶେଷରେ ଦୁହେଁ ଦୁହିଁଙ୍କୁ ଭଲପାଇ ବସିଲେ । ଜ୍ଞାନଦେବୀଙ୍କ ପରିବାର ଲୋକ ତଥା ବିଜୁବାବୁଙ୍କ ବାପାମାଆ ଏକଥା ଜାଣିଲେ । ବାହାଘର ଠିକ୍ ହେଇଗଲା । ୧୯୩୯ ମସିହାରେ ବିଜୁବାବୁଙ୍କ

ସହିତ ଧନୀ ପରିବାରର ଝିଅ ଜ୍ଞାନଦେବୀଙ୍କର ବାହାଘର ହେଲା । ଜ୍ଞାନଦେବୀଙ୍କ ପିତା ଜଣେ ବିଶିଷ୍ଟ ବ୍ୟବସାୟୀ ଥିଲେ । ତାଙ୍କର M.N. ରାଧାକୃଷ୍ଣ ଏଣ୍ଡ୍ କମ୍ପାନୀ ଲିମିଟେଡ୍ ନାମକ ବ୍ୟବସାୟୀ ସଂସ୍ଥା ଥିଲା ।

ଜ୍ଞାନଦେବୀ ଯେଉଁଭଳି ରୂପବତୀ ଥିଲେ, ସେହିଭଳି ସାହସୀ ଓ ଗୁଣବତୀ ଥିଲେ । ପ୍ରତି ପଦକ୍ଷେପରେ ସେ ବିଜୁବାବୁଙ୍କୁ ସହଯୋଗ କରୁଥିଲେ । ବିଜୁବାବୁଙ୍କର ପ୍ରତ୍ୟେକ ସଫଳତା ପଛରେ ତାଙ୍କର ହାତ ଥିଲା । ପ୍ରଚୁର ଅର୍ଥର ଅଧିକାରିଣୀ ହୋଇଥିଲେ ମଧ୍ୟ ତାଙ୍କୁ ଅହଂକାର ଛୁଇଁ ପାରିନଥିଲା । ସେ ଥିଲେ ସ୍ନେହ, ଶ୍ରଦ୍ଧା ଏବଂ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ, ବାତ୍ସଲ୍ୟ ମମତାର ଅବତାର ।

## ଦେଶପ୍ରେମୀ ବିଜୁ

ନିଜ ପସନ୍ଦର ପତ୍ନୀ, ନିଜ ରୁଚିର ଚାକିରି ଏବଂ ମୋଟାଅଙ୍କର ମାସିକ ଦରମା ପାଇ ମଧ୍ୟ ବିଜୁବାବୁ କେଉଁ ଏକ ଅଦୃଶ୍ୟ ଇଙ୍ଗିତରେ ଅସ୍ଥିର ହେଉଥିଲେ । ସେତେବେଳେ ଆମ ଦେଶରେ ଇଂରେଜଙ୍କ ବିରୋଧରେ ପ୍ରବଳ ଆନ୍ଦୋଳନ ଚାଲିଥାଏ । ଏଣେ ଗାନ୍ଧିଜୀଙ୍କର ଅହିଂସା ଆନ୍ଦୋଳନ, ପୁଣି ଅନ୍ୟପଟେ ସନ୍ତ୍ରାସବାଦୀମାନଙ୍କର ସଶସ୍ତ୍ର ସଂଗ୍ରାମ । ପିଲାଟିବେଳୁ ବିଜୁବାବୁ ଗୋରା ସାହେବମାନଙ୍କୁ ଘୃଣା କରି ଆସୁଥିଲେ । ବିଦେଶୀମାନେ ଆମ ଦେଶର ସିଂହାସନ ମାଡ଼ି ବସିଛନ୍ତି । ଆମ ଦେଶବାସୀଙ୍କ ପ୍ରତି ପଶୁ ଭଳି ବ୍ୟବହାର ଦେଖାଉଛନ୍ତି । ଏମାନେ ଆମ ଦେଶରୁ ଶିଘ୍ର ବିଦାୟ ନେବା ହିଁ ଠିକ୍ ହେବ । ତେଣୁ ନିଜକୁ କିଛି ତ୍ୟାଗ କରିବାକୁ ହେବ । ସଂଗ୍ରାମରେ ସାମିଲ ହେବାକୁ ପଡ଼ିବ । ତେବେ ଯାଇ ଆମେ ଆମର ମାତୃଭୂମିର ସେବା କରିପାରିବୁ । ବିଜୁବାବୁଙ୍କ ମାମୁପୁଅ ଭାଇ ଦେବପ୍ରସାଦ ଓ ଆନନ୍ଦପ୍ରସାଦ

ଯେଉଁ ବୀରପଣିଆ ଦେଖାଇଥିଲେ, ସେ ଘଟଣା ବିଜୁଙ୍କ ମନରେ ଗଭୀର ପ୍ରଭାବ ପକାଇଥିଲା । ସେ କଥା ମନେପଡ଼ିଗଲେ, ତାଙ୍କ ଆଖିରେ ଲୁହ ଜକେଇ ଆସେ । ହଠାତ୍ ସେ କ'ଣ କରିବେ ସ୍ଥିର କରିପାରନ୍ତି ନାହିଁ । ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନକୁ ନାପସନ୍ଦ କରି କହିପକାନ୍ତି, "ଭିକ ମାଗି ସ୍ୱାଧୀନତା ଲାଭ କରିବା ସମ୍ଭବ ହେବନାହିଁ , ବରଂ ଏଥିପାଇଁ ଲଢେଇ କରି ଇଂରେଜମାନଙ୍କଠାରୁ ସ୍ୱାଧୀନତାକୁ ଛଡ଼ାଇନେବାକୁ ହେବ । କିନ୍ତୁ ଏଥିପାଇଁ ଆବଶ୍ୟକ— ପ୍ରଚୁର ଅସ୍ତ୍ରଶସ୍ତ୍ର, ଲୋକବଳ, ପୁଣି ତ୍ୟାଗପୂତ ଅନେକ ବୀର ସୈନିକ । ସେ ସବୁ ମିଳିବ କେଉଁଠୁ ?" ବିଜୁବାବୁ ବିଚଳିତ ହୋଇପଡ଼ନ୍ତି । ବେଳେବେଳେ ଚିନ୍ତା କରନ୍ତି— ଚାକିରି ଛାଡ଼ିଦେଇ ସନ୍ତ୍ରାସବାଦୀ ଷଡ଼ଯନ୍ତ୍ରରେ ସାମିଲ ହେଇଯିବେ, ନଚେତ୍ ଗାନ୍ଧିଜୀଙ୍କ ଆନ୍ଦୋଳନରେ ମିଶିଯିବେ ।

ଏହିଭଳି ଗଭୀର ଚିନ୍ତାରେ ଥିବା ଅବସ୍ଥାରେ ଦିନେ ସଂଗ୍ରାମୀ ଜୟପ୍ରକାଶ ନାରାୟଣ ତାଙ୍କ ବସାରେ ପହଞ୍ଚିଲେ । ସେ କେତେଗୁଡ଼ିଏ ଷଡ଼ଯନ୍ତ୍ରରେ ଲିପ୍ତ ଥିବାରୁ ଇଂରେଜ ସରକାର ତାଙ୍କୁ ଭୟଙ୍କର ଅପରାଧୀ ଭାବେ ଘୋଷଣା କରିଥାନ୍ତି । ଜୟପ୍ରକାଶ ନାରାୟଣ ପୋଲିସ ଆଖିରେ ଧୂଳିଦେଇ ନିରାପଦ ସ୍ଥାନକୁ ଚାଲିଯିବାକୁ ଚାହୁଁଥା'ନ୍ତି । ଏହି କାମଟି ବିଜୁବାବୁଙ୍କ ଦ୍ୱାରା ହେଇପାରିବ ବୋଲି ଜୟପ୍ରକାଶ ପ୍ରକାଶ କଲେ । ବିଜୁବାବୁ ଏହିଭଳି ନେତାଙ୍କୁ ମନେ ମନେ ଖୋଜୁଥିଲେ । ସେ ନିଜର ମନକଥା ଖୋଲି ଜୟପ୍ରକାଶକୁ କହିଲେ— 'ଚାକିରି ଛାଡ଼ିଦେଇ ମୁଁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାକୁ ଚାହେଁ । ଜୟପ୍ରକାଶ ବୁଝାଇଦେଲେ— 'ଯେ କୌଣସି ପରିସ୍ଥିତିରେ ଥିଲେ ବି ଦେଶମାତୃକାର ସେବା କରିହେବ, ବରଂ ଚାକିରିରେ ଥାଇ ସଂଗ୍ରାମରେ ଅଧିକ କାମ କରିହେବ' ।

ଶେଷରେ ବିଜୁବାବୁ ଜୟପ୍ରକାଶଙ୍କ ନିକଟରେ ଶପଥ ନେଲେ ଯେ, କର୍ତ୍ତବ୍ୟ ଯେତେ ଭୟଙ୍କର ହେଉପଛକେ, ସେ ଜୀବନକୁ ବାଜି ଲଗେଇ ଦେଶମାତୃକାର ସେବାରେ ମନପ୍ରାଣ ଢାଳିଦେବେ ।

ତାହାହିଁ ହେଲା । ବିଜୁବାବୁ କେତେଥର ତାଙ୍କ ବିମାନରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନେଇ ଗୁପ୍ତସ୍ଥାନରେ ଛାଡ଼ି ଦେଇ ଆସିଲେ । ଛଦ୍ମ ନାମରେ ଅରୁଣା ଆସଫ୍ ଅଲ୍ଲୀ, ଅଶୋକ ମେହେଟ୍ଟା, ଓ ରାମ ମନୋହର ଲୋହିଆ ପ୍ରଭୃତିଙ୍କୁ ବିଭିନ୍ନ ଗୁପ୍ତସ୍ଥାନକୁ ନେବାଆଣିବା କଲେ । ଧୀରେ ଧୀରେ ବିଜୁବାବୁଙ୍କ କାର୍ଯ୍ୟକଳାପ ଗୋରା ଗୁଇନ୍ଦା କର୍ମଚାରୀଙ୍କ ସନ୍ଦେହ ଦୃଷ୍ଟିରେ ପଡ଼ିଲା ।

ବିବାହର ମାତ୍ର ତିନିବର୍ଷ ପରେ ୧୯୪୩ ମସିହା ଜାନୁଆରୀ ମାସ ୧୩ ତାରିଖିରେ ବିଜୁବାବୁ ରାଜଦ୍ରୋହ ଅପରାଧରେ ଦିଲ୍ଲୀରେ ଗିରଫ ହେଲେ । ହାତରେ ହାତକଡ଼ି, ଗୋଡ଼ରେ ବେଡ଼ି ପୁଣି ଦୁଇପାଖରେ ବନ୍ଧୁକଧାରୀ ପୋଲିସ ଧକ୍କା ମାରି ମାରି ବିଜୁବାବୁଙ୍କୁ ଲାଲକିଲ୍ଲା ଦୁର୍ଗ ଭିତରକୁ ନେଇଗଲେ । ରାସ୍ତାର ଦୁଇକଡ଼ରେ ହଜାର ହଜାର ଜନତା । ସମସ୍ତେ ପଚାରୁଥା'ନ୍ତି— ଏ' ଯୁବକ ଜଣକ କିଏ ? ଏତେ ବଡ଼ ସାହସୀ, ଦେଶପ୍ରେମୀ ଯୁବକ ପୁଣି ଏ' ଦେଶରେ ଅଛନ୍ତି ? ବନ୍ଦେ ମାତରମ, ବିଜୁଭାଇ ଜିନ୍ଦାବାଦ, ମହାତ୍ମାଗାନ୍ଧୀ— ଜିନ୍ଦାବାଦ ଧ୍ୱନିରେ ବିଶାଳ ଜନସମୁଦ୍ର କମ୍ପାଇଦେଲେ ସେ ଅଞ୍ଚଳକୁ । ବିଜୁବାବୁ ଲାଲକିଲ୍ଲା ଜେଲରେ ବନ୍ଦୀ ଥିଲାବେଳେ, ତାଙ୍କୁ ମୁକ୍ତ କରିବା ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଚେଷ୍ଟା କରି ବିଫଳ ହେଲେ । ତାଙ୍କୁ ଦିଲ୍ଲୀରୁ ଫିରୋଜପୁର ଜେଲକୁ ସ୍ଥାନାନ୍ତରିତ କରାଗଲା । ତା'ପରେ ତାଙ୍କୁ କଟକ ଜେଲକୁ ପଠାଇ ଦିଆଗଲା । ସେଠାରେ ୧୯୪୫ ମସିହାରେ କାରାମୁକ୍ତ କରାଗଲା ।

ଜେଲରେ ଥିବା ସମୟରେ ବିଜୁବାବୁ ବଡ଼ ବଡ଼ ନେତାମାନଙ୍କ ସଂପର୍କରେ ଆସିବାର ସୁଯୋଗ ପାଇଲେ । ଜେଲରେ ପଣ୍ଡିତ ଜବାହାରଲାଲ ନେହେରୁ ବିଜୁବାବୁଙ୍କ ପ୍ରତି ସ୍ୱତଃ ଆକୃଷ୍ଟ ହୋଇପଡ଼ିଥିଲେ ।

ଜେଲରୁ ମୁକ୍ତି ପାଇଲା ପରେ ବିଜୁବାବୁ ଜଣେ ଲୋକପ୍ରିୟ ନେତାରେ ପରିଣତ ହୋଇଗଲେ । ତାଙ୍କର ଖାତିର ବଢ଼ିଗଲା । ସେ ଜଣେ ସଂଗ୍ରାମୀ ସୈନିକ ଭାବରେ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ହେଇଗଲେ ।

# ବିଜୁବାବୁଙ୍କ ଗ୍ୱିକିରି ଗଲା

ଭାରତର ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଷଡ଼ଯନ୍ତ୍ର କରୁଥିଲେ— ସେମାନଙ୍କୁ ସାହାଯ୍ୟ କରିଥିବାରୁ, ଇଂରେଜ ସରକାରଙ୍କର ଗୁପ୍ତତଥ୍ୟ ସଂଗ୍ରାମୀମାନଙ୍କୁ ଯୋଗାଇ ଦେଇଥିବାରୁ ଏବଂ ବୋମା ଓ ଅନ୍ୟାନ୍ୟ ବିସ୍ଫୋରକ ଦ୍ରବ୍ୟ ଗୁପ୍ତସ୍ଥାନରେ ପହଞ୍ଚାଇଦେବା କାରଣରୁ ବିଜୁବାବୁଙ୍କୁ ଗିରଫ କରାଯାଇଥିଲା । ଦୀର୍ଘଦିନ ପରିଶ୍ରମର ଫଳ ତାଙ୍କର ପାଇଲଟ୍ ଗ୍ୱିକିରିଖଣ୍ଡିକ ସବୁଦିନ ପାଇଁ ଗ୍ୱିଲିଗଲା । ତେଣୁ ଜେଲରୁ ମୁକ୍ତି ପାଇ ସେ ସିଧା ଫେରିଲେ ଓଡ଼ିଶାକୁ ।

ବିଜୁବାବୁ ଜଣେ ବିଖ୍ୟାତ ପାଇଲଟ୍ ଭାବେ ପୂର୍ବରୁ ଏୟାର ଫୋର୍ସର ଉଚ୍ଚପଦସ୍ଥ ଅଫିସରଙ୍କ ଦ୍ୱାରା ପ୍ରଶଂସିତ ହୋଇସାରିଥିଲେ । ଏପରିକି ଚିଫ୍ ପାଇଲଟ୍ ଭାବେ ଭାରତର ତତ୍କାଳୀନ ବଡ଼ଲାଟ୍ ଲର୍ଡ ଓ୍ୱାଭେଲ୍ଙ୍କୁ ସେ ବିମାନରେ ବସାଇ ବର୍ମା ନେଇଯାଇଥିବାର ଗୌରବ ଅର୍ଜନ କରିସାରିଥିଲେ । ଏବେ ଦେଶମାତୃକାର ମୁକ୍ତି ପାଇଁ ଜୀବନକୁ ବାଜି ଲଗେଇ ଅତି ବିପଦପୂର୍ଣ୍ଣ କାର୍ଯ୍ୟଗୁଡ଼ିକ କରି ଜେଲ ଭୋଗ କଲେ— ଶାରୀରିକ ନିର୍ଯ୍ୟାତନା ଭୋଗ କଲେ । ଦେଶର ବଡ଼ ବଡ଼ ନେତାମାନେ ବିଜୁବାବୁଙ୍କ ତ୍ୟାଗ, ନିଷ୍ଠା ଓ ବୀରପଣିଆ ଦେଖି ଚମତ୍କୃତ ହେଉଥିଲେ ।

ବିଜୁବାବୁଙ୍କ ପରବର୍ତ୍ତୀ କାର୍ଯ୍ୟକ୍ରମ ପ୍ରତି ସମସ୍ତଙ୍କର ଦୃଷ୍ଟି ଥାଏ । ବିଜୁବାବୁ ଜାଣିଥିଲେ— ନିଜଭଳି ଆଉ କେତେଜଣ ମଣିଷଙ୍କୁ ତିଆରି ନକଲେ ଓଡ଼ିଶାର ଉନ୍ନତି ସମ୍ଭବ ନୁହେଁ । ତେଣୁ ସେ ଓଡ଼ିଶାରେ ଶିଳ୍ପସଂସ୍ଥାର ପ୍ରତିଷ୍ଠା କାର୍ଯ୍ୟରେ ଲାଗିପଡ଼ିଲେ । ସମ୍ବଳ ଯୋଗାଡ଼ କରି ଚୌଦ୍ୱାରଠାରେ ପ୍ରତିଷ୍ଠା

କଲେ ନିଜର ଟିଉବ୍ କାରଖାନା । ଏହା ଥିଲା— ଏସିଆର ସର୍ବବୃହତ୍ ଟିଉବ୍ କାରଖାନା । ଶିଳ୍ପସଂସ୍ଥାର ଅଭିବୃଦ୍ଧି ସହିତ ତାଙ୍କର ଲୋକପ୍ରିୟତା ମଧ୍ୟ ବୃଦ୍ଧି ପାଉଥାଏ । ଅସଂଖ୍ୟ କର୍ମଚାରୀ ତାଙ୍କ ଦୟାରୁ ଚାକିରି ପାଉଥାଆନ୍ତି । ବିଜୁବାବୁ ଏହିଭଳି ପିଲାଟିବେଳୁ ସ୍ୱାଧୀନଚେତା ଏବଂ ଦେଶପ୍ରେମୀ ଥିବାରୁ ତାଙ୍କର ରୁଚି ରାଜନୀତିରେ ଥାଏ । ଶିଳ୍ପର ବିକାଶ ସହିତ ସେ ଓଡ଼ିଶା ରାଜନୀତିରେ ପ୍ରବେଶ କରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଆନ୍ତି । ତେଣୁ ସେ ହରେକୃଷ୍ଣ ମହତାବଙ୍କୁ ତାଙ୍କର ରାଜନୈତିକ ଗୁରୁଭାବେ ମାନି ନେଇଥାଆନ୍ତି ।

ଦେଶ ସ୍ୱାଧୀନ ହେବାର ଠିକ୍ ପୂର୍ବରୁ ଦେଶ ବିଭାଜିତ ନହେବା ପାଇଁ କଂଗ୍ରେସ ଓ ମୁସ୍‌ଲିମ ଲିଗ୍ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାକୁ ମହତାବ ଯେଉଁ ଶେଷ ଚେଷ୍ଟା କରିଥିଲେ, ସେତେବେଳେ ବିଜୁବାବୁ ତାଙ୍କର ଜଣେ ସହକର୍ମୀ ଓ ଏକପ୍ରକାର ସେକ୍ରେଟାରୀ ଭାବେ ଏଥିରେ ତାଙ୍କୁ ସହାୟତା କରିଥିଲେ । ବିଜୁବାବୁ ସାର୍ ଷ୍ଟାଫୋର୍ଡ କ୍ରିପ୍‌ସ୍‌ଙ୍କ ସେକ୍ରେଟାରୀ ତଥା ଜିନ୍ନାଙ୍କ ସେକ୍ରେଟାରୀଙ୍କ ସହ ସର୍ବଦା ଯୋଗାଯୋଗ ରକ୍ଷା କରୁଥିଲେ । ବିଜୁବାବୁଙ୍କର ସିନା ଚାକିରିଟା ଚାଲିଗଲା; କିନ୍ତୁ ଏବେ ସେ ଅନେକ ଲୋକଙ୍କୁ ଚାକିରି ଦେବାରେ ବ୍ୟସ୍ତ ଥାଆନ୍ତି । ଏହିଭଳି ପରିସ୍ଥିତିରେ ଦେଶ ସ୍ୱାଧୀନ ହେଇଗଲା । ଦେଶର ନୂଆ ପ୍ରଧାନମନ୍ତ୍ରୀ ହେଲେ ବିଜୁବାବୁଙ୍କର ଘନିଷ୍ଠ କଂଗ୍ରେସ ନେତା ପଣ୍ଡିତ ଜବାହାରଲାଲ ନେହେରୁ । ସେ ବିଜୁବାବୁଙ୍କ ତ୍ୟାଗ, ନିଷ୍ଠା ଓ ସଂଗ୍ରାମୀ ଜୀବନ ସଂପର୍କରେ ସଚେତନ ଥିଲେ । ତେଣୁ ପଣ୍ଡିତ ନେହେରୁ ନିଜର ଅଯାଚିତ ଶ୍ରଦ୍ଧା ତାଙ୍କ ଉପରେ ଢାଳିଦେଲେ । ଫଳରେ ବିଜୁବାବୁ ଦେଶର ଜଣେ ପ୍ରମୁଖ ଶିଳ୍ପପତି ଭାବରେ ମୁଣ୍ଡ ଟେକିଲେ । କେବଳ ଶିଳ୍ପର ପ୍ରସାର ନୁହେଁ, ସେହି ଅନୁପାତରେ ସେ ଜାତୀୟ ରାଜନୀତି କ୍ଷେତ୍ରରେ ମଧ୍ୟ ନିଜର ସ୍ଥିତିକୁ ମଜବୁତ କରିବାରେ ଲାଗିପଡ଼ିଲେ ।

ଦେଶ ସ୍ୱାଧୀନ ହେବା ପରେ ପରେ କାଶ୍ମୀର ପ୍ରସଂଗ ନେଇ ଭାରତ ଓ ପାକିସ୍ଥାନ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟିହେଲା । ପାକିସ୍ଥାନୀ ସେନାମାନେ କାଶ୍ମୀର ଉପତ୍ୟକାରେ ହଠାତ୍ ପୋଡ଼ାଜଳା, ଲୁଟ୍‌ତରାଜ ଆରମ୍ଭ କରିଦେଲେ । ସେଠାରେ ଏକପ୍ରକାର ଅଚଳ ଅବସ୍ଥା ତଥା ଆତଙ୍କରାଜ ଖେଳିଗଲା । କାଶ୍ମୀରର ତତ୍‌କାଳୀନ ମହାରାଜା ହରିସିଂହ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କର ଉପସ୍ଥିତି ଏବଂ ସହାୟତା ଲୋଡ଼ିଲେ । କାଶ୍ମୀର ଉପତ୍ୟକାରେ ତତ୍‌କ୍ଷଣାତ୍ କିପରି ଏତେ ଭାରତୀୟ ସୈନ୍ୟଙ୍କୁ ପହଞ୍ଚାଇ ଦିଆଯାଇପାରିବ ଏବଂ ମହାରାଜାଙ୍କ ଜୀବନକୁ ବଞ୍ଚାଯାଇପାରିବ, ଏଥିରେ ପଣ୍ଡିତ ନେହେରୁ ଚିନ୍ତିତ ଥାଆନ୍ତି । କାରଣ ସେଠାରେ ବିମାନ ଅବତରଣ ପାଇଁ କୌଣସି ବନ୍ଦର ନଥାଏ । କେବଳ ଛୋଟିଆ ଏୟାର୍ ଷ୍ଟ୍ରିପ୍‌ଟିଏ । ଦୁର୍ଯୋଗକୁ ସେତେବେଳକୁ ପୁଣି ଘନକୁହୁଡ଼ି ଘେରି ରହିଥାଏ, ଏଣେ ପାହାଡ଼ ପର୍ବତଘେରା ଅଞ୍ଚଳ । ଏଭଳି ପରିସ୍ଥିତିରେ କୌଣସି ପାଇଲଟ୍ ବିମାନ ଧରି କାଶ୍ମୀର ଉପତ୍ୟକାରେ ଅବତରଣ କରିବାକୁ ସାହସ କଲେନାହିଁ । ଯୋଗକୁ ବିଜୁବାବୁ ସେଇଠି ଥାଆନ୍ତି । ତାଙ୍କ ଉପରେ ପଣ୍ଡିତ ନେହେରୁଙ୍କର ଅଗାଧ ବିଶ୍ୱାସ ଥାଏ । ସେ ବିଜୁଙ୍କ ମୁହଁକୁ ଚାହିଁଲେ ଅତି ଅସହାୟ ଦୃଷ୍ଟିରେ । କଳିଙ୍ଗବୀର ବିଜୁବାବୁଙ୍କ ମନ ତ ଦୁଃସାହସିକ କାର୍ଯ୍ୟପାଇଁ ସବୁବେଳେ ପ୍ରସ୍ତୁତ । ସେ ବିନା ବାକ୍ୟ ବିନିମୟରେ ନିଜର ସମ୍ମତି ପ୍ରକାଶ କଲେ । ଭାରତୀୟ ସୈନ୍ୟଙ୍କୁ ନେଇ ବିଜୁବାବୁ ବିମାନ ଚଳାଇ ଅତି ସନ୍ତର୍ପଣରେ ଶ୍ରୀନଗରରେ ଅବତରଣ କଲେ । ମହାରାଜା ହରିସିଂହଙ୍କୁ ବିମାନରେ ବସାଇ ନୂଆଦିଲ୍ଲୀ ନେଇଆସିଲେ । ବିଜୁବାବୁଙ୍କର ଏହି ଦୁଃସାହସିକ କାର୍ଯ୍ୟ ଫଳରେ କାଶ୍ମୀର ଉପତ୍ୟକାରେ ପାକ୍ ସୈନ୍ୟଙ୍କର ଆତଙ୍କରାଜକୁ ରୋକାଯାଇପାରିଥିଲା । ମହାରାଜା ହରିସିଂହ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଇଗଲେ । ଏହି ଘଟଣା ପରେ ବିଜୁବାବୁ ଓ ପଣ୍ଡିତ ନେହେରୁଙ୍କ ମଧ୍ୟରେ ଘନିଷ୍ଠତା ଅତିମାତ୍ରାରେ ବୃଦ୍ଧି ପାଇଥିଲା । ସେତେବେଳେକୁ ବିଜୁବାବୁ **'କଳିଙ୍ଗ ଏୟାର ଲାଇନ୍ସ'**, ନାମରେ ଏକ

ଘରୋଇ ବିମାନ ସେବା ଆରମ୍ଭ କରିସାରିଥାଆନ୍ତି । ସେ ଗ୍ରହୁଁଥିଲେ ତାଙ୍କ ପରି ଆହୁରି ନୂଆ ପାଇଲଟ୍ ଓଡ଼ିଶାରୁ ବାହାରନ୍ତୁ । ତେଣୁ ସେ ଓଡ଼ିଶା 'ଫ୍ଲାଇଂ କ୍ଲବ' ନାମରେ ଏକ ସଂସ୍ଥା ଗଠନ କଲେ । ତାର ସେକ୍ରେଟାରୀ ରହିଲେ— ସ୍ୱୟଂ ବିଜୁବାବୁ । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ହେଲେ— ଅନୁଷ୍ଠାନର ସଭାପତି । ଭୁବନେଶ୍ୱରରେ ଏହି କ୍ଲବଟି ଗଢ଼ିଉଠିଲା । ଏଠାରେ ଭାରତର ଶ୍ରେଷ୍ଠ ଶିକ୍ଷାନୁଷ୍ଠାନର ଶିକ୍ଷାନବୀଶମାନେ ମଧ୍ୟ ଆସି ଶିକ୍ଷାଗ୍ରହଣ କରୁଥିଲେ ।

## ବିଜୁବାବୁଙ୍କର ସବୁଠାରୁ ଦୁଃସାହସିକ କାର୍ଯ୍ୟ

ବିଭିନ୍ନ ସମୟରେ ବିଜୁବାବୁ ଦୁଃସାହସିକ କାର୍ଯ୍ୟମାନ ହାତକୁ ନେଇ ସମଗ୍ର ବିଶ୍ୱକୁ ଚମତ୍କୃତ କରିଦେଇ ପାରିଥିଲେ । ସେହିସବୁ ବିପଦପୂର୍ଣ୍ଣ ଦୁଃସାହସିକ କାର୍ଯ୍ୟଗୁଡ଼ିକ ମଧ୍ୟରୁ ଇଣ୍ଡୋନେସିଆ ଅଭିଯାନ ହେଉଛି ଅନ୍ୟତମ । ଯାହାକି ତାଙ୍କୁ ଆନ୍ତର୍ଜାତୀୟ ସ୍ତରରେ ବିପୁଳ ସମ୍ମାନ ଆଣି-ଦେଇଥିଲା ।

ପୂର୍ବରୁ ବିଜୁବାବୁ ଜଣେ ଦୁଃସାହସୀ ପାଇଲଟ୍ ଭାବେ ପରିଚିତ ଥିଲେ । ତାଙ୍କ ଦ୍ୱାରା ସବୁ ଅସମ୍ଭବ କାର୍ଯ୍ୟ ସମ୍ଭବ ହୋଇପାରେ ବୋଲି ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଠାରୁ ଆରମ୍ଭ କରି ପ୍ରାୟ ସବୁ ବଡ଼ ବଡ଼ ନେତାଙ୍କର ବିଶ୍ୱାସ ଥାଏ ।

ସେତେବେଳେ ଇଣ୍ଡୋନେସିଆ ଡଚ୍‌ମାନଙ୍କ ଅଧୀନରେ ଥାଏ । ସେ ଦେଶର ଲୋକେ ବହୁ ଦୁଃଖକଷ୍ଟରେ ପରାଧୀନ ଜୀବନଯାପନ କରୁଥାନ୍ତି । ତାଙ୍କର ନେତା ଡକ୍ଟର ସୁକର୍ଣ୍ଣ ଏବଂ ଡକ୍ଟର ସାହାରିୟର ଅନ୍ୟମାନଙ୍କ ସହିତ

ସଂପର୍କ ସ୍ଥାପନ କରିପାରୁନଥା'ନ୍ତି । ଫଳରେ ତାଙ୍କ ଦେଶର ବିପ୍ଳବୀ ସରକାର ଆଗେଇ ପାରୁନଥାଏ । ସେମାନେ ବନ୍ଧୁ ରାଷ୍ଟ୍ରରୁ ସହଯୋଗ ପାଇପାରୁ-ନଥା'ନ୍ତି । ଡଚ୍‌ମାନେ ସମସ୍ତ ବନ୍ଦର ଏବଂ ବିମାନ ଅବତରଣ କେନ୍ଦ୍ରକୁ ନିୟନ୍ତ୍ରଣ କରୁଥା'ନ୍ତି ।

ପଣ୍ଡିତ ନେହେରୁ ଇଣ୍ଡୋନେସିଆର ବିପ୍ଳବୀ ନେତାମାନଙ୍କ ସହିତ ଆଲୋଚ଼ନା କରିବାକୁ ଚ୍ାହୁଁଥାନ୍ତି । କିନ୍ତୁ ଏହା ସମ୍ଭବ ହେଉନଥାଏ । ସେ ବିଜୁବାବୁଙ୍କୁ ଏ' ଦିଗରେ ସାହାଯ୍ୟ କରିବାକୁ ଅନୁରୋଧ କଲେ । ବିଜୁବାବୁ କି ଛାଡ଼ିବା ଲୋକ ! ସେ ତାର ବ୍ୟବସ୍ଥା କରିବାକୁ ସମ୍ମତି ପ୍ରକାଶ କରି ନିଜର ଡାକୋଟା ବିମାନଟିକୁ ପ୍ରସ୍ତୁତ କରି ଇଣ୍ଡୋନେସିଆ ଅଭିଯାନ ଆରମ୍ଭ କରିଦେଲେ । ଯୋଗିଆକର୍ତ୍ତା— ବିପ୍ଳବୀ ସରକାରଙ୍କର ରାଜଧାନୀ ଥାଏ । ସେଇଠି ପହଞ୍ଚି ଡଚ୍‌ମାନଙ୍କ ଆଖିରେ ଧୂଳିଦେଇ ବିପ୍ଳବୀ ନେତାମାନଙ୍କୁ ଦିଲ୍ଲୀ ଆସିବାକୁ ହେବ ।

ବିଜୁବାବୁଙ୍କ ବିମାନରେ ବସିଲେ, ତାଙ୍କର ସହଧର୍ମିଣୀ ଜ୍ଞାନଦେବୀ । ତାଙ୍କର ୧୪ ଦିନର ଶିଶୁସନ୍ତାନକୁ ଆୟା ପାଖରେ ଛାଡ଼ଦେଇ ଯାଇଥା'ନ୍ତି । ସାଙ୍ଗରେ ଥାଆନ୍ତି ଇଂଜିନିୟର ଏବଂ କେତେଜଣ କ୍ୟାଡ଼େଟ୍ । ଯୋଗିଆକର୍ତ୍ତା ଯିବା ବାଟରେ ବିଜୁବାବୁ ସିଙ୍ଗାପୁରରେ ନିଜ ବିମାନଟିକୁ ଅବତରଣ କରାଇଲେ । ବିଜୁବାବୁଙ୍କ ପାଖକୁ ଡଚ୍‌ମାନଙ୍କ ପାଖରୁ ଧମକପୂର୍ଣ୍ଣ ଖବର ଆସିଲା— ଯୋଗିଆକର୍ତ୍ତା ଯିବା ବାଟରେ ତାଙ୍କର ବିମାନକୁ ଗୁଳିକରି ଖସାଇ ଦିଆଯିବ । ତେଣୁ ଏଭଳି ଦୁଃସାହସିକ କାର୍ଯ୍ୟରୁ କ୍ଷାନ୍ତ ରହିବାକୁ ସିଙ୍ଗାପୁରରେ ଥିବା ଡଚ୍ ରାଜଦୂତ ସିଲଲାମିଙ୍ଗ୍ ମଧ୍ୟ ପରାମର୍ଶ ଦେଇଥିଲେ ।

ନିର୍ଭୀକ ବିଜୁବାବୁ ସିଧାସଳଖ ତାଙ୍କ ପରାମର୍ଶକୁ ଗ୍ରହଣ କରିବାକୁ ମନା କରିଦେଇଥିଲେ । ପଣ୍ଡିତ ନେହେରୁଙ୍କୁ ତାର ଯୋଗେ ସେ ନିଜର ମନକଥାକୁ ଜଣାଇ ଦେଇଥିଲେ । ତା'ପରଦିନ ବିଜୁବାବୁଙ୍କ ବିମାନ

ଯୋଗିଆକର୍ତ୍ତା ଅଭିମୁଖେ ଜାକର୍ତ୍ତା ଉପରଦେଇ ଉଡ଼ିବାକୁ ଆରମ୍ଭ କଲା । ଡଚ୍ ଆକାଶ-ବାହିନୀର କେତୋଟି ଲଢୁଆ ବିମାନ ତାଙ୍କ ବିମାନକୁ ଘେରିପଡ଼ି ଭୟଭୀତ କଲେ । କିନ୍ତୁ ଦୁଃସାହସୀ ବିଜୁବାବୁ ନିଜ ବିମାନଟିକୁ ଏତେ ଉପରକୁ ଉଠାଇନେଇ ଏଭଳି ଚମତ୍କାରିତା ପ୍ରଦର୍ଶନ କଲେ ଯେ— ଡଚ୍ ବିମାନଗୁଡ଼ିକ ହତାଶ ହେବାକୁ ବାଧ୍ୟ ହେଲେ ।

ଜୀବନ ସହିତ ବାଜି ଲଗାଇ ବିଜୁବାବୁ ଲକ୍ଷ୍ୟସ୍ଥଳରେ ନିଜ ବିମାନକୁ ଅବତରଣ କରାଇଲେ । ସେଠାରେ ପୁଣି ନିଜ ଜୀବନକୁ ବିପନ୍ନ କରି ବିପ୍ଳବୀ ସରକାରଙ୍କ ଉପରାଷ୍ଟ୍ରପତି ଡକ୍ଟର ମହମ୍ମଦ ହଟ୍ଟାଙ୍କୁ ଅତି କୌଶଳପୂର୍ଣ୍ଣ ଉପାୟରେ ଦିଲ୍ଲୀ ନେଇଆସିଲେ । ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ ଓ ପ୍ରତିରକ୍ଷା ମନ୍ତ୍ରୀ ସର୍ଦ୍ଦାର ବଳଦେବ ସିଂହଙ୍କ ସହିତ ସେମାନଙ୍କର ସାକ୍ଷାତ— ଆଲୋଚନା ପରେ ବିଜୁବାବୁ ପୁଣି ସେମାନଙ୍କୁ ନେଇ ଯୋଗିଆକର୍ତ୍ତା ଅଭିମୁଖେ ନିଜ ବିମାନଟିକୁ ଉଡ଼ାଇନେଲେ । ସେଠାରେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କୁ ଭେଟି ଆମ ଦେଶର ନେତାମାନଙ୍କ ମନୋଭାବ ସ୍ପଷ୍ଟ କରିଦେଇଥିଲେ । ଏହି ଘଟଣାର ମାତ୍ର ତିନିଦିନ ପରେ ଡଚ୍ କର୍ତ୍ତୃପକ୍ଷ ଯୋଗିଆକର୍ତ୍ତା ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଆକାଶ ଓ ସ୍ଥଳବାହିନୀ ପକ୍ଷରୁ ଅତି ଭୟଙ୍କର ଆକ୍ରମଣ ଆରମ୍ଭ କରିଦେଲେ । ବିପ୍ଳବୀ ସରକାରଙ୍କ ଅଧିକୃତ ଅଞ୍ଚଳକୁ ସେମାନେ ଧ୍ୱସ୍ତବିଧ୍ୱସ୍ତ କରିଦେବାକୁ ଆପ୍ରାଣ ଚେଷ୍ଟା ଚଳାଇଲେ । ଏଭଳି ପରିସ୍ଥିତିରେ ସେ ଗୁପ୍ତରେ ରାତି ଦୁଇଟାରେ ଡକ୍ଟର ସାହାରିୟର, ସୁମାତ୍ରାର କମାଣ୍ଡର, ଡକ୍ଟର ସୁବାନ୍ଦ୍ରିଓ, ଡକ୍ଟର ସୁଦର୍ଶନଙ୍କ ସମେତ ଅନ୍ୟ କେତେକ ନେତାଙ୍କୁ ନିଜ ବିମାନରେ ବସାଇ ଯୋଗିଆକର୍ତ୍ତାରୁ ଖସି ପଳାଇ ଆସିଲେ । ଭୟଙ୍କର ପରିସ୍ଥିତିରୁ ଖସିଆସି ବହୁ କଷ୍ଟ ସ୍ୱୀକାର କରି ତା'ପରଦିନ ସକାଳେ ସେ ସିଙ୍ଗାପୁରରେ ନିଜ ବିମାନକୁ ଅବତରଣ କରାଇଲେ । ସେ ଏତେ ଉଚ୍ଚରେ ବିମାନ ଚଳାଇଥିଲେ ଯେ ଡଚ୍‌ମାନେ ଏହାର କୌଣସିପ୍ରକାର ସୁରାକ ପାଇ ପାରିନଥିଲେ ।

ତତ୍‌କାଳୀନମାନଙ୍କର ଅତ୍ୟାଗ୍ରର ଆଉ ବେଶୀଦିନ ଚଳିପାରିଲା ନାହିଁ । ବିଶ୍ୱର ବିଭିନ୍ନ ଦେଶ ଇଣ୍ଡୋନେସିଆକୁ ସ୍ୱାଧୀନ କରିବାକୁ ଦାବି କଲେ । ଶେଷରେ ବିଜୁବାବୁଙ୍କ ଇଛା ପୂରଣ ହେଲା, ଇଣ୍ଡୋନେସିଆ ସ୍ୱାଧୀନ ହେଲା । ଇଣ୍ଡୋନେସିଆର ତ୍ରାଣକର୍ତ୍ତାଭାବେ ବିଜୁବାବୁ ସେ ଦେଶର ନରନାରୀଙ୍କ ହୃଦୟରେ ଚିରଦିନ ପାଇଁ ରହିଗଲେ । ସେ ହେଲେ— ଇଣ୍ଡୋନେସିଆର ଜୀବନ୍ତ ଦେବତା । ବିଜୁବାବୁଙ୍କ ତ୍ୟାଗ ଓ ନିଷ୍ଠା ପ୍ରତି ସ୍ୱୀକୃତି ଜଣାଇ ତାଙ୍କ ଦେଶର ରାଷ୍ଟ୍ରପତି ଡକ୍ଟର ସୁକର୍ଣ୍ଣ କୃତଜ୍ଞତାପୂର୍ଣ୍ଣ ଉପହାରସ୍ୱରୂପ ବିଭିନ୍ନ ମୂଲ୍ୟବାନ୍ ପଦାର୍ଥ, ଜମି ଓ ତୈଳଖଣି ପ୍ରଦାନ କରିଥିଲେ ।

୧୯୫୦ ମସିହାରେ ବିଜୁବାବୁ ସେ ସମସ୍ତ ସମ୍ପତ୍ତିକୁ ଇଣ୍ଡୋନେସିଆ-ବାସୀଙ୍କ ଉଦ୍ଦେଶ୍ୟରେ ସମର୍ପି ଦେଲେ । ଏଥିରେ ବିଜୁବାବୁଙ୍କର ମହାନୁଭବତାର ପରିଚୟ ଆହୁରି ସ୍ପଷ୍ଟ ହୋଇଗଲା । ସେ କହିଲେ— କଳିଙ୍ଗସମ୍ରାଟ କେବେ କାହାରିଠାରୁ କିଛି ଗ୍ରହଣ କରେନାହିଁ, ବରଂ ଆବଶ୍ୟକ ପଡ଼ିଲେ ସେ ଦାନ କରେ ।

ଇଣ୍ଡୋନେସିଆକୁ ଏକ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବାରେ ବିଜୁବାବୁଙ୍କ ଅବଦାନକୁ ସମ୍ମାନ ଜଣାଇ ଇଣ୍ଡୋନେସିଆ ସରକାର ୧୯୭୩ ମସିହାରେ ତାଙ୍କୁ ଜାକର୍ତ୍ତାଠାରେ 'ଭୂମିପୁତ୍ର' ସମ୍ମାନରେ ସମ୍ମାନିତ କରିଥିଲେ । ପୁଣିଥରେ ୧୯୯୫ ମସିହାରେ ମୁକ୍ତି ଆନ୍ଦୋଳନର ମଧୁର ସ୍ମୃତିକୁ ମନେପକାଇ ଇଣ୍ଡୋନେସିଆବାସୀ ତାଙ୍କର ୫୦ ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ଜାକର୍ତ୍ତାଠାରେ ବିଜୁବାବୁଙ୍କୁ ସେ ଦେଶର ସର୍ବଶ୍ରେଷ୍ଠ ସମ୍ମାନ "ବିନତଙ୍ଗ ଯଶ ଉତ୍ତମ' ଉପାଧିରେ ଭୂଷିତ କରିଥିଲେ । ବିଜୁବାବୁ ହେଉଛନ୍ତି— ଏକମାତ୍ର ବିଦେଶୀ, ଯେ କି ଉଭୟ ଭୂମିପୁତ୍ର ଓ ବିନତଙ୍ଗ ଯଶ ଉପାଧି ଇଣ୍ଡୋନେସିଆରୁ ପାଇଛନ୍ତି ।

# ରାଜନୀତିରେ ବିଜୁବାବୁ

ପାଇଲଟ୍ ଗ୍ଭକିରି ବେଳେ ବିଜୁ ପଟ୍ଟନାୟକ ସଂଗ୍ରାମୀମାନଙ୍କୁ ସହଯୋଗ କରି ଜେଲ ଯାଇଥିଲେ— ଦୁଃସାହସିକ କାର୍ଯ୍ୟ କରି ଇଣ୍ଡୋନେସିଆକୁ ସ୍ୱାଧୀନ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ତେଣୁ ସେ ସମଗ୍ର ବିଶ୍ୱରେ ଜଣେ ବୀରପୁଙ୍ଗବ ନେତା ଭାବେ ପରିଚିତ ହୋଇଗଲେ । ଓଡ଼ିଶାବାସୀ ବିଜୁବାବୁ ନାଆଁକୁ ଧରି ନିଜକୁ ଧନ୍ୟ ମନେକଲେ ।

ସ୍ୱାଧୀନତା ପୂର୍ବରୁ ବିଜୁବାବୁ ଶିଳ୍ପ ପ୍ରତିଷ୍ଠାକୁ ଅଗ୍ରାଧିକାର ଦେଇଥିଲେ ମଧ୍ୟ ସେ ରାଜନୀତିକୁ ଛାଡ଼ି ପାରିନଥିଲେ । ୧୯୪୬ ମସିହାରେ ସେ ପ୍ରଥମ କରି କଟକରୁ ବିଧାନସଭାକୁ ସର୍ବସମ୍ମତିକ୍ରମେ କଂଗ୍ରେସର ନେତା ଭାବେ ନିର୍ବାଚିତ ହୋଇଥିଲେ । ସେହିଦିନଠାରୁ ସେ ମୃତ୍ୟୁ ପର୍ଯ୍ୟନ୍ତ ରାଜନୀତି ଓ ନିର୍ବାଚନରୁ କେବେ ବିଶ୍ରାମ ନେଇନାହାନ୍ତି । ମୋଟ ୫୧ ବର୍ଷ ମଧ୍ୟରେ ସେ କେବଳ ୧୯୬୭ ମସିହାରୁ ୧୯୭୧ ମସିହା ଗ୍ଭରିବର୍ଷ ବ୍ୟତୀତ ଅବଶିଷ୍ଟ ୪୭ବର୍ଷ କାଳ ରାଜ୍ୟ ବିଧାନସଭା ଓ ପାର୍ଲିଆମେଣ୍ଟର ସଦସ୍ୟ ରହିଥିଲେ । ସେ ୧୬ଥର ବିଧାନସଭା ଓ ଲୋକସଭାକୁ ନିର୍ବାଚିତ ହୋଇଥିଲେ ।

ବିଧାନସଭାର ପ୍ରଥମ ଥର ପାଇଁ ସଦସ୍ୟପଦ ପାଇ ସେ ବିଭିନ୍ନ କ୍ଷେତ୍ରରେ ଓଡ଼ିଶାକୁ ଶ୍ରେଷ୍ଠସ୍ଥାନରେ ବସାଇବାକୁ ଚେଷ୍ଟା କରିଥିଲେ । ତେଣୁ ସେ ପଣ୍ଡିତ ନେହେରୁ ତଥା ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କର ଅତି ପ୍ରିୟପାତ୍ର ହୋଇପାରିଥିଲେ । ଫଳରେ ଓଡ଼ିଶା ରାଜନୀତିକୁ ବିଜୁବାବୁ ସର୍ବଦା ପ୍ରଭାବିତ କରି ରଖିଥିଲେ । ବିଜୁବାବୁ ଜନ୍ମରୁ ଜିଦ୍‌ଖୋର ପ୍ରକୃତିର ମଣିଷ ଥିଲେ । ପରିସ୍ଥିତି ଗ୍ଭପରେ ପଞ୍ଚମ ଦଶକର ଶେଷଭାଗରେ ଡକ୍ଟର ମହତାବଙ୍କ ସହିତ ବିଜୁବାବୁଙ୍କର ମତାନ୍ତର ଘଟିଲା । ବିଜୁବାବୁ

ମହତାବଙ୍କ ଇଚ୍ଛା ବିରୋଧରେ ପ୍ରଦେଶ କଂଗ୍ରେସର ସଭାପତି ହୋଇଗଲେ । ଏହାପରେ ୧୯୬୦ ମସିହା ପରବର୍ତ୍ତୀ ବିଧାନସଭା ନିର୍ବାଚନରେ ସେ କଂଗ୍ରେସର ନେତୃତ୍ୱ ନେଇଥିଲେ । ବିଜୁବାବୁ ସେତେବେଳକୁ ଜଣେ ଲୋକପ୍ରିୟ ନେତା ହୋଇସାରିଥା'ନ୍ତି । ସେ ପୂର୍ବର ସମସ୍ତ ରେକର୍ଡ ଭଙ୍ଗକରି ବିଜୟୀ ହେଲେ । ତାଙ୍କ ନେତୃତ୍ୱରେ ଓଡ଼ିଶାରେ ନୂଆ ମନ୍ତ୍ରୀମଣ୍ଡଳ ଗଠନ କରାଗଲା । ରାଜ୍ୟରେ ତୃତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ସର୍ବାଧିକ ବିକାଶମୂଳକ କାର୍ଯ୍ୟକ୍ରମ ଆରମ୍ଭ ହେଲା । ତେଣୁ ୧୯୬୦-୬୪ ମସିହା ସମୟକୁ ଓଡ଼ିଶାର 'ସୁବର୍ଣ୍ଣଯୁଗ' କୁହାଯାଏ । ଏହି ସମୟ ମଧ୍ୟରେ ଜାତୀୟ ସ୍ତରରୁ କେତେକ ପ୍ରତିଷ୍ଠାନକୁ ଓଡ଼ିଶା ପାଇଁ ବିଜୁବାବୁ ଝାମ୍ପି ଆଣିଥିଲେ । ରାଉରକେଲାର ଆଞ୍ଚଳିକ ଯାନ୍ତ୍ରିକ କଲେଜ, ଭୁବନେଶ୍ୱରର ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ, ସୈନିକ ସ୍କୁଲ, ସୁନାବେଡ଼ାର ମିଗ୍ ବିମାନ କାରଖାନା, ରେଙ୍ଗାଳି ଜଳସେଚନ ପ୍ରକଳ୍ପ ପ୍ରଭୃତି ବିଜୁବାବୁଙ୍କ ବ୍ୟକ୍ତିଗତ ଚେଷ୍ଟାରୁ ଓଡ଼ିଶାରେ ସମ୍ଭବ ହୋଇପାରିଥିଲା । ସୁକିନ୍ଦାରୁ ଲୁହାପଥର ରପ୍ତାନି ପାଇଁ ପାରାଦ୍ୱୀପ ବନ୍ଦର ପର୍ଯ୍ୟନ୍ତ ମାନଚିତ୍ର ଉପରେ ଗୋଟାଏ ସରଳରେଖା ଟାଣି ବିଜୁବାବୁ ଏକ୍ସପ୍ରେସ୍ ହାଇୱେ ନିର୍ମାଣ କଲେ । ଓଡ଼ିଶାର ଲୁପ୍ତ ଗୌରବକୁ ଫେରାଇ ଆଣିବା ଉଦ୍ଦେଶ୍ୟରେ ସେ ପାରାଦ୍ୱୀପ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୬୧ ମସିହାରେ କେନ୍ଦ୍ରର ଅନୁମୋଦନ ନ ଲୋଡ଼ି ବିଜୁବାବୁ ଯେଭଳି ଭାବେ ଏକ କ୍ଷୁଦ୍ର ବନ୍ଦର ନାଆଁରେ ବୃହତ୍ ବନ୍ଦରର ପରିକଳ୍ପନା କଲେ, ତାହା ନିଶ୍ଚୟ ଏକ ଯୁଗାନ୍ତକାରୀ ସାଫଲ୍ୟ । ଏଥିପାଇଁ ପ୍ରଥମେ ସେ ଓଡ଼ିଶା ସରକାରଙ୍କ ପାଣ୍ଠିରୁ ୧୯କୋଟି ଟଙ୍କା ବ୍ୟୟ କରି ବନ୍ଦରର ସମସ୍ତ ପ୍ରାଥମିକ କାର୍ଯ୍ୟ ଶେଷ କରିଦେଇଥିଲେ । ୧୯୬୬ ମସିହାରୁ କେନ୍ଦ୍ର ସରକାର ଏହାକୁ ଏକ ବୃହତ୍ ବନ୍ଦର ଭାବେ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଅତି ଚତୁରତା ସହିତ ବିଜୁବାବୁ ଏହି ବନ୍ଦର ପାଇଁ ପଣ୍ଡିତ ନେହେରୁଙ୍କ ଠାରୁ ପୂର୍ବରୁ ୧୯୬୨ ମସିହାରେ ଅନୁମୋଦନ ନେଇଯାଇଥିଲେ ।

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଓଡ଼ିଶାରେ ଶିକ୍ଷାକ୍ଷେତ୍ରରେ ବିପୁଳ ପରିବର୍ତ୍ତନ ଘଟିଲା । ପ୍ରାଥମିକ ପାଠ୍ୟକ୍ରମ ଶିକ୍ଷାର ମୂଳଦୁଆ ହୋଇଥିବାରୁ ସେ ପ୍ରାଥମିକ ପାଠ୍ୟପୁସ୍ତକଗୁଡ଼ିକୁ ପ୍ରଥମେ ଜାତୀୟକରଣ କରି ଆଧୁନିକ ଢାଞ୍ଚାରେ ଶିକ୍ଷାଦାନ ପାଇଁ ବ୍ୟବସ୍ଥା କରିଦେଲେ ।

୧୯୬୨ ମସିହାରେ ଆମ ଦେଶ ଉପରେ ପୁଣି ବିପଦ ପଡ଼ିଲା । ଭାରତ-ଚୀନ ଯୁଦ୍ଧର ଭୟାବହତା ସମୟରେ ପଣ୍ଡିତ ନେହେରୁ ବିଜୁବାବୁଙ୍କୁ ସ୍ମରଣ କଲେ । ଦେଶର ଚରମ ସଂକଟ ସନ୍ଧିରେ ବିଜୁବାବୁ ଦିଲ୍ଲୀରେ ପହଞ୍ଚିଲେ । ନେହେରୁଙ୍କ ପରାମର୍ଶକ୍ରମେ ସେ ଆମେରିକାରେ ପହଞ୍ଚି କି ଯାଦୁକରୀ ବ୍ୟକ୍ତିତ୍ୱ ପ୍ରଦର୍ଶନ କଲେ କେଜାଣି, ମାର୍କିନ ନେତୃବର୍ଗ ତାଙ୍କଦ୍ୱାରା ପ୍ରଭାବିତ ହୋଇଗଲେ । ଫଳରେ ଚୀନ ଆକ୍ରମଣ ନିଷ୍କ୍ରିୟ ହେବାରେ ଲାଗିଲା । ପରବର୍ତ୍ତୀ ଚୀନା ଆକ୍ରମଣର ମୁକାବିଲା ପାଇଁ ଭାରତ ପର୍ଯ୍ୟାପ୍ତ ପରିମାଣରେ ସାମରିକ ସାହାଯ୍ୟ ଲାଭ କଲା ।

ବୀର ପୁରୁଷଙ୍କୁ ହିଁ ଯୁଦ୍ଧ ସମୟରେ ଖୋଜାଯାଏ । ଭାରତ ପାକିସ୍ଥାନ ଯୁଦ୍ଧ ସମୟରେ ପୁଣି ବିଜୁବାବୁଙ୍କୁ ଖୋଜା ପଡ଼ିଲା । ସେତେବେଳେ ପାକିସ୍ଥାନକୁ ସମର୍ଥନ କରି ଇଣ୍ଡୋନେସିଆ ସରକାର ଭାରତ ବିରୋଧରେ ବୁଡ଼ାଜାହାଜ ଦେବାକୁ ଅଙ୍ଗୀକାର ବଦ୍ଧଥାଏ । ଏପରି ଦୁଃସମୟରେ ପ୍ରଧାନମନ୍ତ୍ରୀ ବିଜୁବାବୁଙ୍କ ସାହାଯ୍ୟ କାମନା କଲେ । ଏହା ଦେଶର କାମ ହୋଇଥିଲେ ମଧ୍ୟ ବିଜୁବାବୁ ନିଜ ଖର୍ଚ୍ଚରେ ଇଣ୍ଡୋନେସିଆ ଯାଇ ରାଷ୍ଟ୍ରପତିଙ୍କ ନିଷ୍ପତ୍ତିକୁ ବଦଳାଇଲେ । ମୁସଲମାନ ରାଷ୍ଟ୍ର ହୋଇଥିବାରୁ ଇଣ୍ଡୋନେସିଆ ପାକିସ୍ଥାନକୁ ଯେଉଁ ଅନ୍ଧ ସମର୍ଥନ କରୁଥିଲା, ସେଥିରୁ ସେମାନେ ବିରତ ହେଲେ । ଚତୁର ବିଜୁବାବୁ ନିଜର ଉପସ୍ଥିତ ବୁଦ୍ଧି ବଳରେ ଇଣ୍ଡୋନେସିଆର ରାଷ୍ଟ୍ରନୀତିକୁ ବଦଳାଇ ବିଜୟଦର୍ପରେ ଭାରତକୁ ଫେରିଲେ ।

ଭାରତ ପାକିସ୍ଥାନ ଯୁଦ୍ଧକାଳରେ ବିଜୁବାବୁ କାଶ୍ମୀର ମାଟିରେ ଉଡ଼ାଜାହାଜ ସହ ପ୍ରଥମେ ଅବତରଣ କରି ଅବଦୁଲ୍ଲାଙ୍କ ସହିତ ସଂପର୍କ

ରଖିଥିଲେ । ଏପରିକି ବାଂଲାଦେଶର ରାଷ୍ଟ୍ରପତି ବଂଗବଂଧୁ ଶେଖ୍ ମୁଜିବୁର ରହମନଙ୍କୁ ହତ୍ୟା ଷଡ଼ଯନ୍ତ୍ରରୁ ରକ୍ଷା କରିବା ପାଇଁ ବିଜୁବାବୁ ଦୁଃସାହସିକ ପଦକ୍ଷେପ ନେଇଥିଲେ । ଢାକାରେ ପହଞ୍ଚି ତାଙ୍କୁ ଉଦ୍ଧାର କରିବାର ଯୋଜନା କରୁ କରୁ ବଂଗବଂଧୁଙ୍କୁ ହତ୍ୟା କରାଯାଇସାରିଥିଲା— ଏହା ଥିଲା ବିଜୁବାବୁଙ୍କ ପାଇଁ ଏକ ଦୁର୍ଭାଗ୍ୟ ।

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳ ଥିଲା ମାତ୍ର ୧୪ମାସ ; ଏହି ସ୍ୱଳ୍ପକାଳ ମଧ୍ୟରେ ବିଜୁବାବୁ ଅନୁନ୍ନତ ଓଡ଼ିଶାକୁ ଉନ୍ନତ ରାଜ୍ୟରେ ପରିଣତ କରିବା ପାଇଁ ଅସଂଖ୍ୟ କାମ ହାତକୁ ନେଇଥିଲେ । ଏହାସବୁ ସମ୍ଭବ ହୋଇଥିଲା — ତାଙ୍କର ଦୁଃସାହସିକ ପଦକ୍ଷେପ ଗ୍ରହଣ ତଥା ପଣ୍ଡିତ ନେହେରୁଙ୍କ ସହିତ ସୁସମ୍ପର୍କ ଥିବା କାରଣରୁ ।

ଓଡ଼ିଶାରେ ଶିଳ୍ପସ୍ଥାପନର ସ୍ୱପ୍ନ ସେ ପ୍ରଥମେ ଦେଖିଥିଲେ । ଚୌଦ୍ୱାରଠାରେ ଓଡ଼ିଶା ଟେକ୍ସଟାଇଲ୍ ମିଲ, କଳିଙ୍ଗ ଟିଉବ୍, ଇଲେକ୍ଟ୍ରୋଲକ୍ସ ରେଫ୍ରିଜେରେଟର ତିଆରି କାରଖାନା, ବଡ଼ବିଲ (କେନ୍ଦୁଝର)ରେ କଳିଙ୍ଗ ଆଇରନ୍ ୱାର୍କ୍ସ, ବି.ପଟ୍ଟନାୟକ ମାଇନ୍ସ ପ୍ରଭୃତି ପ୍ରତିଷ୍ଠା ଥିଲା ସ୍ୱପ୍ନର ଗୋଟିଏ ଗୋଟିଏ ବାସ୍ତବ ମୀନାର । ଇଣ୍ଡିୟାନ୍ ମେଟାଲ୍ସ ଏଣ୍ଡ ଫେରୋଆଲ ୟଜ୍ (ଇମ୍ଫା) କୋରାପୁଟର ଥେରୁବାଲିଠାରେ ପ୍ରତିଷ୍ଠିତ ହୋଇଛି । ଶିଳ୍ପପତି ଶ୍ରୀ ବଂଶୀଧର ପଣ୍ଡା ବିଜୁବାବୁଙ୍କ ସକ୍ରିୟ ପୃଷ୍ଟପୋଷକତାରେ ଏହାକୁ ପ୍ରତିଷ୍ଠା କରିପାରିଥିଲେ । ବିଜୁବାବୁଙ୍କ ସାହାଯ୍ୟରେ ଶ୍ରୀ ଦାମୋଦର ରଥ ବମ୍ବେଠାରେ ଏକ୍ସପୋର୍ଟ ଜୋନ୍ ଅଞ୍ଚଳରେ ଇଲେକ୍ଟ୍ରୋନିକ୍ କାରଖାନା ପ୍ରତିଷ୍ଠା କରି ରପ୍ତାନି-ବାଣିଜ୍ୟ ଜରିଆରେ ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି । ବିଜୁବାବୁ ପ୍ରତ୍ୟେକ ପଞ୍ଚାୟତରେ ମିଳୁଥିବା କଞ୍ଚାମାଲକୁ ବ୍ୟବହାର କରି ଛୋଟ ଛୋଟ ପଞ୍ଚାୟତ ଶିଳ୍ପ ପ୍ରତିଷ୍ଠାର ପରିକଳ୍ପନା କରିଥିଲେ । ତାହାସବୁ ପ୍ରତିଷ୍ଠା ପାଇବା ପରେ ରାଜ୍ୟ ସରକାରଙ୍କ ଉପଯୁକ୍ତ ସାହାଯ୍ୟ ଓ ସହଯୋଗ ଅଭାବରୁ ତାହା ରୁଗ୍ଣ ଶିଳ୍ପରେ ପରିଣତ ହୋଇଗଲା । ସେ ଦିନରାତି ରାଜ୍ୟର ସର୍ବାଙ୍ଗୀଣ ବିକାଶ

ପାଇଁ ସ୍ୱପ୍ନ ଦେଖୁଥିଲେ। ପ୍ରତ୍ୟେକ ଉନ୍ନୟନମୂଳକ କାର୍ଯ୍ୟରେ ସେ ପ୍ରତ୍ୟକ୍ଷଭାବେ ଜଡ଼ିତ ହେଇଯାଉଥିଲେ । ସେ ଥିଲେ ଅତ୍ୟନ୍ତ ଦୁଃସାହସୀ । ଅନ୍ୟ କାହାରିକୁ ସେ ନିଜର ସମକକ୍ଷ ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ । କେତେକ କ୍ଷେତ୍ରରେ ସେ ନିଜେ ଯାହା ନିଷ୍ପତ୍ତି ନେଇଯାଉଥିଲେ, ତାକୁ ହିଁ କାର୍ଯ୍ୟକାରୀ କରିପକାଉଥିଲେ । ବେଳେ ବେଳେ ନିୟମ ବହିର୍ଭୂତ ନିଷ୍ପତ୍ତି ନେଇ କେନ୍ଦ୍ର ସରକାରଙ୍କ ଅନୁମତି ନନେଇ ରାଜ୍ୟର ଉନ୍ନତି ଉଦ୍ଦେଶ୍ୟରେ ରାଜକୋଷରୁ ଅର୍ଥ ବ୍ୟୟ କରିପକାଉଥିଲେ । ଯାହାକି ପରବର୍ତ୍ତୀ କାଳରେ ବିଜୁବାବୁଙ୍କୁ ଅଡୁଆରେ ପକାଇଦେଲା । ଏଥିପାଇଁ ସେ ଦୁର୍ନୀତି ଅଭିଯୋଗର ଶିକାର ହୋଇଥିଲେ । ଶେଷରେ ତଦନ୍ତ ପାଇଁ ଖାନ୍ନା କମିଶନ ବସିଥିଲା । ତଥାପି ବିଜୁବାବୁ ନିଜ ଉପରେ ଗଭୀର ବିଶ୍ୱାସ ରଖିଥିଲେ । ନିଜେ ଯାହା କହିଛନ୍ତି— ତାହା ଠିକ୍ କରିଛନ୍ତି ଏବଂ ରାଜ୍ୟର ଉନ୍ନତି ପାଇଁ ସେ ଆହୁରି ହଜାର ବାର ଏଇଭଳି କାର୍ଯ୍ୟ କରିବାକୁ ପଛାଇବେ ନାହିଁ ବୋଲି ଉତ୍ତର ଦେଇଥିଲେ । ଫଳରେ ବିଜୁବାବୁଙ୍କ ଭାବମୂର୍ତ୍ତି କ୍ଷୁଣ୍ଣ ହେବାରେ ଲାଗିଲା ।

କାମରାଜ ଯୋଜନାରେ ସେ ମୁଖ୍ୟମନ୍ତ୍ରୀ ପଦବୀରୁ ଓହରିଯାଇ ୧୯୬୩ ମସିହାରୁ ରାଜ୍ୟର ଉନ୍ନତିର ବାହକ ହେଲେ । ସ୍ୱଇଚ୍ଛାରେ କ୍ଷମତାରୁ ଓହରିଯିବାରେ ବିଜୁବାବୁ ହେଲେ ପ୍ରଥମ ନେତା । ରାଜ୍ୟ ଯୋଜନା କମିଶନର ଚେୟାରମ୍ୟାନ୍ ଭାବେ ଦାୟିତ୍ୱ ବହନ କରି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟର ଯୋଜନା ପ୍ରସ୍ତୁତ କଲେ । କିନ୍ତୁ ସେତେବେଳେ କଂଗ୍ରେସ ସରକାର ଦୁର୍ନୀତି ଅଭିଯୋଗରେ କଳଙ୍କିତ ହୋଇଯାଇଥିବାରୁ ବିଜୁବାବୁଙ୍କ ସମସ୍ତ ଉନ୍ନୟନମୂଳକ କାର୍ଯ୍ୟ ଲୋକଙ୍କ ଆଢୁଆଳରେ ରହିଗଲା । ୧୯୬୬-୬୭ ମସିହା ବିଧାନସଭା ନିର୍ବାଚନରେ କଂଗ୍ରେସର ସଭ୍ୟ ସଂଖ୍ୟା ୮୨ରୁ ୩୦କୁ ଖସିଆସିଲା । ବିଜୁବାବୁ ପାଟକୁରା ନିର୍ବାଚନ ମଣ୍ଡଳୀରୁ ୧୬ ହଜାର ଭୋଟରେ ପରାଜିତ ହେଲେ । ଏଭଳି ପରାଜୟ— ବିଜୁବାବୁଙ୍କୁ ଅସ୍ଥିର କରିପାରିଲା ନାହିଁ । ସେ ଯଦି

ନିଜପାଇଁ କିଛି କରିବାକୁ ଚାହିଁଥା'ନ୍ତେ, ତେବେ ରାଜନୀତି ଛାଡ଼ି ନିଜ ଶିଳ୍ପର ବିକାଶରେ ଲାଗିପଡ଼ିଥା'ନ୍ତେ । କିନ୍ତୁ ସେ ତାହା କଲେ ନାହିଁ । ଏତେ କାମ କଲେ ବି ଲୋକେ ତାଙ୍କୁ ପରାଜିତ କଲେ, ଏଥିପାଇଁ ସେ ଅଭିମାନ କଲେ ନାହିଁ କିମ୍ବା ଲୋକଙ୍କଠାରୁ ଦୂରେଇ ଗଲେ ନାହିଁ । ଅବିଚଳିତ ଭାବରେ ସେ ରାଜ୍ୟର ବିକାଶ କଥା ଚିନ୍ତା କରିବାରେ ଲାଗି ରହିଲେ ।

## ବିଜୁବାବୁଙ୍କର ଜୟଯାତ୍ରା

ବିଜୁବାବୁ ମୁଖ୍ୟମନ୍ତ୍ରୀ ପଦରୁ ଓହରି ଯାଇ ଓଡ଼ିଶାର ବିକାଶ କାର୍ଯ୍ୟରେ ମନଯୋଗ ଦେଇଥିଲେ । ତାଙ୍କ ସ୍ୱଳ୍ପକାଳୀନ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶାରେ ଯାହା ବିକାଶମୂଳକ କାର୍ଯ୍ୟ ହୋଇପାରିଥିଲା— ତା'ର ତୁଳନା କରାଯାଇପାରେନା । ତେଣୁ ସେ ସମୟକୁ ଓଡ଼ିଶାର 'ସୁବର୍ଣ୍ଣଯୁଗ' କୁହାଯାଏ । ତାଙ୍କ ନିର୍ଦ୍ଦେଶରେ, ତାଙ୍କ ପରୋକ୍ଷ ବା ପ୍ରତ୍ୟକ୍ଷ ସହଯୋଗରେ ଓଡ଼ିଶାରେ ଜଳସେଚନର ଧାରା ଫିଟିଯାଇଥିଲା । ବିଦ୍ୟୁତ ଉତ୍ପାଦନ ପ୍ରକଳ୍ପମାନ ଗଢ଼ିଉଠିଲା । ବାଲିମେଳା ବିଦ୍ୟୁତକେନ୍ଦ୍ର ଆନ୍ଧ୍ର ପ୍ରଦେଶରେ ହେବାର ଥିଲା । ତାକୁ ଓଡ଼ିଶାରେ ପ୍ରତିଷ୍ଠା କରିବା ପାଇଁ ସେ ସମସ୍ତପ୍ରକାର କୌଶଳ ଅବଲମ୍ବନ କରିଥିଲେ । ସେ ନିଜର ଉପସ୍ଥିତ ବୁଦ୍ଧି ବଳରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ନେହେରୁଙ୍କ ଦ୍ୱାରା ଗୋଟିଏ ଦିନରେ (୫.୧.୬୪) ତାଳଚେର ଥର୍ମାଲ, ଟିକରପଡ଼ା ନଦୀବନ୍ଧ ଓ ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ କରାଇପାରିଥିଲେ । ତା' ପରଦିନ ସେ ବାଲିମେଳା ଯୋଜନାର ଶିଳାନ୍ୟାସ କରାଇଥା'ନ୍ତେ । ଦୁର୍ଭାଗ୍ୟର କଥା ନେହେରୁ ଅସୁସ୍ଥ ହୋଇପଡ଼ିବାରୁ ସେ କାମ ହୋଇପାରି ନଥିଲା ।

ପରବର୍ତ୍ତୀକାଳରେ ଯେଉଁସବୁ ନଦୀବନ୍ଧ ଯୋଜନା ଓଡ଼ିଶାରେ କାର୍ଯ୍ୟକାରୀ ହୋଇଛି, ତାହାର ରୂପରେଖ ବିଜୁବାବୁଙ୍କ ସମୟରେ ହିଁ ହୋଇଥିଲା । ଯଥା— ଉପର କୋଲାବ (୧୯୭୬) ରେଙ୍ଗାଳି (୧୯୭୩) ଇନ୍ଦ୍ରାବତୀ (୧୯୭୮) ଇବ୍ ଉପତ୍ୟକା ଯୋଜନା ଇତ୍ୟାଦି । ହୀରାକୁଦ ଯୋଜନାରେ ସୁନାମ ଅର୍ଜନ କରିଥିବା ଚିଫ୍ ଇଂଜିନିୟରଙ୍କୁ ବିଜୁବାବୁ ଓଡ଼ିଶାର ରାଜ୍ୟପାଳ କରି ଆଣିବାକୁ ନେହେରୁଙ୍କୁ ଅନୁରୋଧ କରିଥିଲେ । ଫଳରେ ଇଂଜିନିୟର ଅଯୋଧ୍ୟାନାଥ ଖୋସଲା ରାଜ୍ୟପାଳ ଭାବେ ଦାୟିତ୍ୱ ବହନ କରି ଓଡ଼ିଶାର ବିକାଶ କାର୍ଯ୍ୟରେ ବିଜୁବାବୁଙ୍କ ସହକର୍ମୀ ଭାବେ କାର୍ଯ୍ୟ କଲେ । ଖୋସଲା ଦଶକର ଗନ୍ତବ୍ୟ (Decade of Desting) ଶୀର୍ଷକ ପୁସ୍ତକରେ ଓଡ଼ିଶାର ସମସ୍ତ ପ୍ରସ୍ତାବିତ ଯୋଜନାର ରୂପରେଖ ପ୍ରସ୍ତୁତ କରିଥିଲେ । ବିଜୁବାବୁ ଥିଲେ— ନେହେରୁଙ୍କର ଗେହ୍ଲାପୁଅ । ସେ ବିଜୁବାବୁଙ୍କ ମନୋଭାବ ବୁଝିପାରି ଓଡ଼ିଶାର ବିକାଶ ପାଇଁ ସବୁ କଥାରେ ରାଜି ହେଉଯାଉଥିଲେ । ବିଜୁବାବୁ ବୁଝାଇ ଦେଇଥିଲେ— ଓଡ଼ିଶା ହେଉଛି ଏକ ଅନଗ୍ରସର ରାଜ୍ୟ । ଏଠାରେ ଯେତେ କାମ କଲେ ବି କିଛି ଆଖିଦୃଶିଆ ହେଇପାରିବ ନାହିଁ । ଯୁଗ ଯୁଗର ଅନ୍ଧକାରକୁ ହଟେଇବା ପାଇଁ ଆମକୁ ବହୁତ କାମ କରିବାର ଅଛି ।

ବିଜୁବାରୁ ନିଜେ ହୃଦୟଙ୍ଗମ କରିଥିଲେ, ଏଠାରେ ଘରୋଇ ଶିଳ୍ପପତିଙ୍କର ଅଭାବ । ତେଣୁ ସେ ଓଡ଼ିଶା ଇଣ୍ଡଷ୍ଟ୍ରିଆଲ୍ ଡେଭେଲପ୍‌ମେଣ୍ଟ କର୍ପୋରେସନ (IDC) ସ୍ଥାପନ କରିଥିଲେ । କେତେକ ମୌଳିକ ଶିଳ୍ପ ଉଦ୍ୟୋଗ ପ୍ରତିଷ୍ଠାନ ଜରିଆରେ ସେ ଏହାକୁ ଆରମ୍ଭ କରିଥିଲେ । IDC ଅଧୀନରେ ବରଗଡ଼ ସିମେଣ୍ଟ କାରଖାନା ପ୍ରତିଷ୍ଠା ହେଲା । ସେତେବେଳେ ଦେଶରେ ସିମେଣ୍ଟର ପ୍ରଚୁର ଆବଶ୍ୟକତା ଥିଲା । ଓଡ଼ିଶାରେ ସିମେଣ୍ଟର ଅଭାବ ଦୂର କରିବା ପାଇଁ ଏହି କାରଖାନା ମୁଖ୍ୟତଃ କାମ ଆରମ୍ଭ କଲା । ବିଦ୍ୟୁତ୍ ଅଭାବ କାରଣରୁ କୌଣସି ଉନ୍ନୟନମୂଳକ କାର୍ଯ୍ୟ ସମ୍ଭବ ନୁହେଁ । ତେଣୁ ସେ ହୀରାକୁଦଠାରେ ବିଦ୍ୟୁତଶକ୍ତି·ପରିବହନ ଖୁଣ୍ଟ ତିଆରି କାରଖାନା,

କେବୁଲ ତିଆରି କାରଖାନା ଓ ବିଭିନ୍ନ ଯନ୍ତ୍ରପାତି ତିଆରି ଓ ମରାମତି କାରଖାନା ସ୍ଥାପନା କରିଥିଲେ । ସେଠାରେ ଯେଉଁ ଇଣ୍ଡିୟାନ ଆଲୁମିନିୟମ ଘରୋଇ ଉଦ୍ୟୋଗ ଆରମ୍ଭ ହୋଇଥିଲା— ତା' ପଛରେ ବିଜୁବାବୁଙ୍କ ପ୍ରୋତ୍ସାହନ ଥିଲା । ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ସ୍ୱାଧୀନତାର ଆଦ୍ୟକାଳରେ ସେ ବିଧାନସଭାର ସଦସ୍ୟ ଥାଇ ନିଜ ଉଦ୍ୟମରେ କେତେକ ଶିଳ୍ପ ପ୍ରତିଷ୍ଠା କରିଥିଲେ । ତାଙ୍କର ପ୍ରଥମ ଉଦ୍ୟୋଗ, ଓଡ଼ିଶା ଟେକ୍ସଟାଇଲ୍ ମିଲ ଚୌଦ୍ୱାରଠାରେ ପ୍ରତିଷ୍ଠା ଲାଭ କରିଥିଲା । ପୂର୍ବରୁ ଓଡ଼ିଶାରେ ସୂତା କିମ୍ବା ଲୁଗା ତିଆରି ହେଉ ନଥିଲା । ଜଳଯୋଗାଣ ପାଇଁ ପାଇପ୍ ତିଆରି ହେଉ ନଥିଲା । ସେ ୧୯୫୩ ମସିହାରେ ଚୌଦ୍ୱାରଠାରେ କଳିଙ୍ଗ ଟିଉବ୍ କାରଖାନା ପ୍ରତିଷ୍ଠା କଲେ । ଏହା ଥିଲା ସେତେବେଳ ପାଇଁ ଅତ୍ୟାଧୁନିକ ପାଇପ୍ କାରଖାନା । ସେହି ଚୌଦ୍ୱାରଠାରେ ପୁଣି ପ୍ରତିଷ୍ଠା କଲେ କଳିଙ୍ଗ ରେଫ୍ରିଜେରେଟର କାରଖାନା । ଚେକୋସ୍ଲୋଭାକିଆର ଏକ କମ୍ପାନୀ ସହାୟତାରେ ଏହି କଳିଙ୍ଗ ଇଲେକ୍ଟ୍ରୋଲକ୍ସ ରେଫ୍ରିଜେରେଟର କାରଖାନା ଓଡ଼ିଶା ମାଟିରେ ମୁଣ୍ଡ ଟେକିଲା । କ୍ଷିପ୍ର ଗୃହନିର୍ମାଣ ପାଇଁ ଲୁହା ଟ୍ରସ୍ ଉତ୍ପାଦନ ଓ ଅନ୍ୟାନ୍ୟ ସରଞ୍ଜାମ ତିଆରି କରିବା ପାଇଁ ସେ କେନ୍ଦୁଝରର ବଡ଼ବିଲ ନିକଟରେ ମାଟକାମବେଡ଼ାଠାରେ ପ୍ରତିଷ୍ଠା କଲେ— କଳିଙ୍ଗ ଆଇରନ୍ ୱାର୍କ୍ସ । ଏହାକୁ ପରେ ସେ IDCକୁ ହସ୍ତାନ୍ତର କରିଦେଇଥିଲେ ।

ପଞ୍ଚାୟତ ଶିଳ୍ପ ଭଳି ଅଭିନବ କଳ୍ପନାକୁ ବିଜୁବାବୁ ଓଡ଼ିଶାରେ କାର୍ଯ୍ୟକାରୀ କରିଥିଲେ । ଏହା ଫଳରେ ଓଡ଼ିଶାର ଗ୍ରାମାଞ୍ଚଳରେ ବିଭିନ୍ନ କୁଟୀରଶିଳ୍ପ ଗଢ଼ିଉଠିଲା । ଏହି ଯୋଜନାରେ କେତେକ ସ୍ଥାନରେ ରାଣୀଗଞ୍ଜ ମାଟି ଟାଇଲ ଏବଂ ସିମେଣ୍ଟ ଟାଇଲ କାରଖାନା ମଧ୍ୟ ପ୍ରତିଷ୍ଠା ହୋଇଥିଲା । ଚୌଦ୍ୱାରଠାରେ IDC ତରଫରୁ ବଡ଼ ଟାଇଲ କାରଖାନା ଓ ଫର୍ଣ୍ଣେସରେ ବ୍ୟବହାରଯୋଗ୍ୟ ରିଫ୍ରାକ୍ଟରି ଇଟା ତିଆରି ହେଲା । କିନ୍ତୁ ବିଜୁଙ୍କ ସ୍ୱପ୍ନକୁ ଅନ୍ୟମାନେ ବିଦ୍ରୁପ କରି ଏସବୁକୁ ମାଟିରେ ମିଶାଇଦେଲେ ।

୧୯୬୪ ମସିହାରେ ବିଜୁବାବୁ ଜାତୀୟସ୍ତରରେ କଂଗ୍ରେସ ଅଧିବେଶନ ଭୁବନେଶ୍ୱରଠାରେ ଆୟୋଜନ କଲେ । ଏହା ଫଳରେ ବିଜୁବାବୁ ଓଡ଼ିଶାର ସମ୍ମାନକୁ ବହୁଉଚ୍ଚକୁ ନେଇ ଯାଇ ପାରିଥିଲେ ।

କଳିଙ୍ଗ ଶବ୍ଦ ପ୍ରତି ବିଜୁବାବୁଙ୍କର ଥିଲା— ବିଶେଷ ଆକର୍ଷଣ । ସେ ପ୍ରାଚୀନ ଓଡ଼ିଶା କଳିଙ୍ଗମାଟିର ମହିମା ଓ ଗର୍ବ-ଗୌରବକୁ ସର୍ବଦା ସ୍ମରଣ କରୁଥିଲେ । ତେଣୁ ସେ ତାଙ୍କର ପ୍ରତ୍ୟେକ ପ୍ରତିଷ୍ଠାନର ନାମକୁ 'କଳିଙ୍ଗ' ନାମରେ ନାମିତ କରୁଥିଲେ । ସେହି କଳିଙ୍ଗ ନାମକୁ ବିଶ୍ୱ ଦରବାରରେ ପରିଚିତ କରିବା ପାଇଁ ସେ ଆନ୍ତର୍ଜାତିକ ସ୍ତରରେ ୧୯୫୧ ମସିହାରେ **କଳିଙ୍ଗ ପୁରସ୍କାର**ର ପ୍ରବର୍ତ୍ତନ କଲେ । ବିଜ୍ଞାନକୁ ଲୋକପ୍ରିୟ କରିବା କ୍ଷେତ୍ରରେ ବିଶେଷ ଅବଦାନ ଥିବା ବୈଜ୍ଞାନିକମାନଙ୍କୁ ପୁରସ୍କୃତ କରିବା ଉଦ୍ଦେଶ୍ୟରେ ଏହି ପୁରସ୍କାର ୟୁନୋସ୍କୋ ମାଧ୍ୟମରେ ପ୍ରଦାନ କରାଯାଇଥାଏ ।

ବିଜୁବାବୁ ନିଜେ ଥିଲେ ଜଣେ ଦକ୍ଷ ଫୁଟବଲ ଖେଳାଳି । ତାଙ୍କର ଏହି ପ୍ରିୟ ଖେଳକୁ ସର୍ବଭାରତୀୟ ସ୍ତରରେ ଲୋକପ୍ରିୟ କରିବା ନିମନ୍ତେ ତଥା ଓଡ଼ିଶାରେ ଏକ ପ୍ରଥମଶ୍ରେଣୀ ସର୍ବଭାରତୀୟ ପ୍ରତିଯୋଗିତା ଆୟୋଜନର ଆବଶ୍ୟକତାକୁ ଦୃଷ୍ଟିରେ ରଖି ସେ ୧୯୬୧ ମସିହାରୁ **'କଳିଙ୍ଗ କପ୍'** ପ୍ରଦାନ ଆରମ୍ଭ କରିଥିଲେ ।

ବିଜୁବାବୁଙ୍କର ଡାକରା ଥିଲା— "ମୋତେ ସହଯୋଗ କର, ମୁଁ ଓଡ଼ିଶାକୁ ସୁନା କରିଦେବି ।" ତାଙ୍କର ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀମାନେ ବିଜୁବାବୁଙ୍କର ଚରିତ୍ର ସଂହାର କରି ବିଭିନ୍ନ ପ୍ରକାର ଗୁଜବ ପ୍ରଚାର କରି ନିଜର ଆତ୍ମରକ୍ଷାର ପଥ ବାଛି ନେଇଥିଲେ । କାରଣ ସେମାନେ ଅନୁଭବ କରୁଥିଲେ, ବିଜୁବାବୁ ଯଦି ଏଇଭଳି ପ୍ରଗତିମୂଳକ କାର୍ଯ୍ୟ କରିଚାଲନ୍ତି— ତେବେ ସେମାନଙ୍କୁ ଆଉ କେହି ଚିହ୍ନିବେ ନାହିଁ । ତେଣୁ ତିଳକୁ ତାଳ କରି ବିଜୁବାବୁଙ୍କ ନାମରେ ଅସଂଖ୍ୟ ଗୁଜବ ସୃଷ୍ଟି କଲେ । ବିଜୁବାବୁ ଅନ୍ୟ

ଉପାଦାନରେ ଗଢ଼ା ଲୁହାର ମଣିଷ ଥିଲେ । ସେ କୌଣସିପ୍ରକାର ଗୁଜବରେ ବିଚଳିତ ହେବାର ବ୍ୟକ୍ତି ନଥିଲେ । ସେ କହୁଥିଲେ— "ଓଡ଼ିଶାର ପ୍ରଗତିକୁ ଦୃଷ୍ଟି ନଦେଇ, ଯେଉଁମାନେ ରାଜନୈତିକ ଅସୂୟା ଯୋଗୁଁ ତାଙ୍କ ବିରୋଧରେ ପ୍ରତିଶୋଧ-ପରାୟଣ ହୋଇଉଠିଛନ୍ତି, ସେମାନଙ୍କୁ ଭଗବାନ୍ ସହାୟ ହୁଅନ୍ତୁ । କାରଣ ଏପରି ହୀନ ଚରିତ୍ର ସଂହାର କରି ଯେଉଁମାନେ ଉପରକୁ ଉଠିଯିବାକୁ ଚେଷ୍ଟା କରନ୍ତି, ଏ ଜାତି ତାଙ୍କୁ କ୍ଷମା କରିପାରିବ ନାହିଁ । ମୋ ଜାତିର ପ୍ରଗତି ପାଇଁ, ଏହାର ସର୍ବାଙ୍ଗୀଣ ମଙ୍ଗଳ ପାଇଁ ମୁଁ ସକଳପ୍ରକାର ବୋଝକୁ ମଥାପାତି ସହିଯିବି; କିନ୍ତୁ ମୋ ଓଡ଼ିଶାର ପ୍ରଗତିକୁ ଯେଉଁମାନେ ବାଧା ଦେଉଛନ୍ତି— ସେମାନଙ୍କୁ ମୁଁ କ୍ଷମା ଦେଇପାରିବି ନାହିଁ । ପ୍ରଶଂସା ବା ତୋଷାମଦିକୁ ପାଥେୟ କରି କୌଣସି ଜାତି ବଡ଼ ହେଇପାରିନାହିଁ । ଏଥିପାଇଁ ତ୍ୟାଗ, ନିଷ୍ଠା ଓ କାର୍ଯ୍ୟକାରୀ ବୁଦ୍ଧି ଦରକାର । ଭିକ୍ଷାପାତ୍ର ଧରି କେହି କେବେ ନିଜର ଅଧିକାରକୁ ମାଗି ଆଣି ପାରେନାହିଁ । ଏହାକୁ ଜୋରଜବରଦସ୍ତ ଛଡ଼ାଇ ନେବାକୁ ପଡ଼େ ।"

ଓଡ଼ିଶାର ପ୍ରଗତିର ରଥକୁ ଅନେକ ଆଗକୁ ନେଇଯିବାକୁ ହେବ— ତେଣୁ ସେ ଉଚ୍ଚଶିକ୍ଷାର ସୁଯୋଗ ସୃଷ୍ଟି କରିବା ପାଇଁ ଓଡ଼ିଶାରେ ପ୍ରତିଷ୍ଠା କଲେ, ରିଜିଓନାଲ କଲେଜ୍ ଅଫ୍ ଏଜୁକେସନ୍, ଓ D.M. ସ୍କୁଲ, ଏଗ୍ରିକଲ୍‌ଚର ଏଣ୍ଡ ଭେଟ୍‌ନାରୀ ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ କଲେଜ । ଏହାଦ୍ୱାରା ଓଡ଼ିଶାରେ ଶିକ୍ଷାର ପ୍ରସାର ଦ୍ରୁତଗତିରେ ସମ୍ଭବ ହୋଇପାରିଥିଲା । ବିଭିନ୍ନ ବୈଷୟିକ ବିଦ୍ୟାଳୟ ଓ ତାଲିମ କେନ୍ଦ୍ର ପ୍ରତିଷ୍ଠା ପାଇଁ ସେ ଅଧିକ ଗୁରୁତ୍ୱ ଦେଇଥିଲେ । ଓଡ଼ିଶାରେ ଆଞ୍ଚଳିକ ଗବେଷଣାଗାର ଏବଂ କେନ୍ଦ୍ରୀୟ ବିଜ୍ଞାନାଗାର ପ୍ରତିଷ୍ଠା କରି ବିଜ୍ଞାନକୁ ଅଧିକ ଲୋକପ୍ରିୟ କରିବାକୁ ଚେଷ୍ଟା କରିଥିଲେ । ସେ ଓଡ଼ିଆ ଗବେଷକ-ମାନଙ୍କୁ ପରାମର୍ଶ ଦେଇ କହୁଥିଲେ— "ଗବେଷଣା କରିବ ତ ଲେଭିଟେସନ (Levitation) ର ସୂତ୍ର ବାହାର କର, ଯାହାଦ୍ୱାରା ହନୁମାନ ବିରାଟ ପାହାଡ଼କୁ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଅକ୍ଳେଶରେ ନେଇଯାଇପାରୁଥିଲା ।

ସାହିତ୍ୟ ରଚ଼ନା କରିବ ତ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଭଳି ଲେଖ । ଇତିହାସ ଲେଖିବ ତ ଓଡ଼ିଆ ଜାତିର ଇତିହାସ ଠିକ୍ ଭାବେ ଲେଖ । ବସ୍ତୁବାଦୀ ଓ ବାସ୍ତବବାଦୀ ଚିନ୍ତାଧାରା ସହିତ ବିଜୁବାବୁଙ୍କର ସାହିତ୍ୟ, ସଂଗୀତ ଧର୍ମ ପ୍ରତି ଅନୁରାଗ ଥିଲା— ଯାହା ବାହ୍ୟିକ ନଥିଲା । ସାହିତ୍ୟ-ସମ୍ବାଦର ଆଦର୍ଶ ଭାବରେ ସେ 'କଳିଙ୍ଗ' ସମ୍ବାଦପତ୍ର ପ୍ରତିଷ୍ଠା କରିଥିଲେ । ଉତ୍କଳ ସଂଗୀତ ମହାବିଦ୍ୟାଳୟର ସ୍ଥାପନ ଓ ଶ୍ରୀ ଜଗନ୍ନାଥ ମନ୍ଦିରର ସ୍ଥାୟୀ ମରାମତି କାର୍ଯ୍ୟ ଦେଶ ପାଇଁ ଥିଲା ତାଙ୍କର ଆଉ ଦୁଇଟି ମହାନ ଅବଦାନ ।

## ଫଳ ଓଲଟା ହେଲା

ବିଜୁବାବୁଙ୍କ ସ୍ୱର୍ଦ୍ଧିତ ବ୍ୟକ୍ତିତ୍ୱ ଆଗରେ ଅନ୍ୟମାନେ ଥିଲେ ବାମନ-ସଦୃଶ । ଏକ ସୁନ୍ଦର ଓ ସମୃଦ୍ଧ ଓଡ଼ିଶା ଗଠନ ଥିଲା— ତାଙ୍କର ସ୍ୱପ୍ନ । ସେହି ସ୍ୱପ୍ନକୁ ସାକାର କରିବାକୁ ସେ ଥିଲେ— ଦୃଢ଼ପ୍ରତିଜ୍ଞ । ତାଙ୍କ ଚଲାପଥର ସମସ୍ତ ବାଧାକୁ ସେ କରିଛନ୍ତି— ଅସ୍ୱୀକାର । ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀଙ୍କ କଟୁ ମନ୍ତବ୍ୟକୁ ସେ ଭ୍ରୂକ୍ଷେପ କରିନାହାନ୍ତି । ସେ ଅନ୍ୟ କାହାରିକୁ ନିଜର ସମକକ୍ଷ ବୋଲି ମନେକରିନାହାନ୍ତି । ତାଙ୍କର ଥିଲା— ଗଭୀର ଆତ୍ମ-ବିଶ୍ୱାସ ଓ ଅଦମ୍ୟ ସାହସ, ଯାହା ସ୍ୱତଃସ୍ଫୂର୍ତ୍ତ ସ୍ୱାଭିମାନ ବିଜଡ଼ିତ । ତ୍ୟାଗରେ ସେ ଥିଲେ ଇନ୍ଦ୍ରଦ୍ୟୁମ୍ନ । ତାଙ୍କର ପ୍ରାଣ କାନ୍ଦୁଥିଲା— ଓଡ଼ିଆ ଜାତିର ଉତ୍‌ଥାନ ପାଇଁ । ଅନେକ ଉତ୍‌ଥାନ-ପତନ, ବିଶ୍ୱାସ-ଅବିଶ୍ୱାସ ଏବଂ ସନ୍ଦେହର ଘେର ଭିତରେ ଥାଇ ସେ ନିଜ କର୍ତ୍ତବ୍ୟ କରିଗ୍ଲୁଥିଲେ । କଂଗ୍ରେସ ପାଇଁ ତାଙ୍କର ସମସ୍ତ ତ୍ୟାଗ, ପ୍ରଚେଷ୍ଟା, କାରାବରଣ ସତ୍ତ୍ୱେ କେତେକ କୁଚ଼କ୍ରୀ ଗୋଷ୍ଠୀ ତଥାକଥିତ ନେତାମାନଙ୍କ ଦ୍ୱାରା ବିଜୁବାବୁ ବଦନାମ ହୋଇଗଲେ । ପଣ୍ଡିତ ନେହେରୁଙ୍କ

ମୃତ୍ୟୁ ପରେ ପରେ ବିଜୁବାବୁ ଶ୍ରୀହୀନ ହୋଇପଡ଼ିଲେ । ତାଙ୍କପ୍ରତି ପ୍ରବଳ ଅସୂୟାଭାବ ପ୍ରଦର୍ଶନ ହେବାରୁ ସେ କଂଗ୍ରେସ ଦଳ ପରିତ୍ୟାଗ କରିବାକୁ ବାଧ୍ୟ ହେଲେ ଏବଂ ୧୯୭୧ ମସିହାରେ ନୂତନ ରାଜନୈତିକ ଦଳ, 'ଉତ୍କଳ କଂଗ୍ରେସ' ପ୍ରତିଷ୍ଠା କଲେ ।

ଏହା ପୂର୍ବରୁ ସେ ୧୯୬୬ ମସିହା ନିର୍ବାଚନରେ ପରାଜୟ ବରଣ କରିସାରିଥିଲେ । ତାର କାରଣ ଥିଲା— ସେତେବେଳେ କଂଗ୍ରେସ ତଥା ବିଜୁବାବୁଙ୍କ ବିରୋଧରେ ପ୍ରବଳମାତ୍ରାରେ ଅପପ୍ରଚାରର ଝଡ଼ ବହି ଚାଲିଥିଲା । ବିଜୁବାବୁଙ୍କ ଭାବମୂର୍ତ୍ତିକୁ ନଷ୍ଟ କରିବା ପାଇଁ ସକଳ ଚେଷ୍ଟା ନିର୍ବାଚନରେ ହିଁ ପ୍ରତିଫଳିତ ହୋଇଥିଲା ।

ବିଜୁବାବୁ ଯେଉଁସବୁ ଉନ୍ନୟନମୂଳକ କାର୍ଯ୍ୟ ହାତକୁ ନେଇଥିଲେ— ସେସବୁ ତାଙ୍କର ବ୍ୟକ୍ତିଗତ ସ୍ୱାର୍ଥ ଦୃଷ୍ଟିରୁ କରୁଛନ୍ତି ବୋଲି ପ୍ରଚାର କରାଗଲା । ଲୋକେ ସହଜରେ ଭଲମନ୍ଦ ବୁଝିପାରିଲେ ନାହିଁ ।

୧୯୭୧ ମସିହାରେ ସେ ଏକସଙ୍ଗେ ଚାରୋଟି ସ୍ଥାନରୁ ନିର୍ବାଚନ ଲଢ଼ିବାରୁ ପୁନର୍ବାର ପରାଜୟ ବରଣ କଲେ । ଉପ-ନିର୍ବାଚନରେ ରାଜନଗର ନିର୍ବାଚନ ମଣ୍ଡଳୀରୁ ୩୪ ହଜାରରୁ ଅଧିକ ଭୋଟ ପାଇ ନିର୍ବାଚିତ ହେଲେ । ବିଜୁବାବୁ କଂଗ୍ରେସ ଦଳରୁ ବିଦାୟ ନେଇ ଆଶାନୁରୂପ ସଫଳତା ପାଇପାରି ନଥିଲେ । ତଥାପି ସେ ଭାଙ୍ଗି ପଡ଼ି ନଥିଲେ ।

କଥାରେ ଅଛି— ବିପଦ ଆସିଲେ, ସେ ତାର ବନ୍ଧୁବାନ୍ଧବଙ୍କୁ ସାଙ୍ଗରେ ଧରି ଆସେ । ଏପରି ରାଜନୈତିକ ବିପର୍ଯ୍ୟୟ ସମୟ ବେଳକୁ ତାଙ୍କର ଶିଳ୍ପ ସାମ୍ରାଜ୍ୟ ପତନୋନ୍ମୁଖୀ ହୋଇପଡ଼ିଥାଏ । ରାଜନୀତିରେ ପ୍ରଚୁର ଅର୍ଥ ଖର୍ଚ୍ଚ ବହନ କରି ସେ ଏକପ୍ରକାର ଦେବାଳିଆ ହେଇଯାଇଥାନ୍ତି । ତଥାପି

ସ୍ୱାଭିମାନର ପ୍ରତୀକ ବିଜୁବାବୁଙ୍କର ମୁହଁଟାଣ ଥାଏ । ସେ ଓଡ଼ିଶାକୁ ଶିଳ୍ପସମୃଦ୍ଧ ରାଜ୍ୟରେ ପରିଣତ କରିଦେବାକୁ ସ୍ୱପ୍ନ ଦେଖୁଥା'ନ୍ତି ।

ବିଜୁବାବୁ ଅନୁଭବ କଲେ, ଆଞ୍ଚଳିକ ଦଳ ମାଧ୍ୟମରେ ଲୋକମତକୁ ନିଜ ଆଡ଼କୁ ଆଣି ହେବନାହିଁ । ତେଣୁ ସେ ଜାତୀୟସ୍ତରରେ ଦୃଢ଼ ବିକଳ୍ପ ଦଳ ଗଠନ ପାଇଁ ପ୍ରାଥମିକ କାର୍ଯ୍ୟ ଆରମ୍ଭ କରିଦେଲେ । ମୋରାରଜୀ ଦେଶାଇଙ୍କ ଗୋଷ୍ଠୀସହ ହାତ ମିଳାଇ 'ଭାରତୀୟ ଲୋକଦଳ' ଗଠନ କଲେ । ସେତେବେଳକୁ କେନ୍ଦ୍ରରେ ଇନ୍ଦିରାଗାନ୍ଧୀଙ୍କ ନେତୃତ୍ୱରେ ଶାସନ ଚ୍ଚଳିଥାଏ ।

୧୯୭୫ ମସିହାରେ ଦେଶରେ ଜରୁରୀ ପରିସ୍ଥିତି ଜାରି କରାଗଲା । ସମସ୍ତ ବିରୋଧୀ ଦଳର ନେତାମାନଙ୍କୁ ଗିରଫ କରି ଜେଲରେ ରଖାଗଲା । ବିଜୁବାବୁ ଜଣେ ଜାତୀୟସ୍ତରର ନେତା ହୋଇଥିବାରୁ ତାଙ୍କୁ ମଧ୍ୟ ଗିରଫ କରାଯାଇ ରୋହତକ୍ ଜେଲରେ ରଖାଗଲା । ବନ୍ଦୀଶାଳାରେ କୃଷ୍ଣ ଜନ୍ମଲାଭ କଲାପରି ବିଜୁବାବୁଙ୍କର ମାନସ ସନ୍ତାନ 'ଜନତା ଦଳ' ଜେଲ ମଧ୍ୟରୁ ସୃଷ୍ଟି ହେଲା ।

୧୯୭୭ ମସିହାରେ ଜରୁରୀ ପରିସ୍ଥିତି ଉଠିଗଲା । ବିଜୁବାବୁ ଜେଲରୁ ମୁକ୍ତିପାଇ ଭୁବନେଶ୍ୱର ଫେରିଲେ । ସେଦିନ ବିଜୁବାବୁଙ୍କୁ ଯେଉଳି ଉଚ୍ଛ୍ୱସିତ ସ୍ୱାଗତ-ସମ୍ବର୍ଦ୍ଧନା ଜନସାଧାରଣଙ୍କ ତରଫରୁ ପ୍ରଦାନ କରା-ଯାଇଥିଲା— ତାହା ଥିଲା ଅଭୂତପୂର୍ବ । ସେଦିନ ଲୋକଙ୍କର ଉନ୍ମାଦନା ଓ ଉତ୍ସାହ ଯେଉଁମାନେ ଦେଖିଛନ୍ତି — ସେମାନେ ଜୀବନକାଳ ମଧ୍ୟରେ କେବେ ଭୁଲିପାରିବେ ନାହିଁ ।

# ପୁଣି କାଳିଆ ଲେଉଟିଲା

ଓଡ଼ିଶାର ଲୋକେ ଜଗନ୍ନାଥଙ୍କୁ ଶ୍ରଦ୍ଧା ଓ ଭକ୍ତିରେ କାଳିଆ ବୋଲି ଡାକନ୍ତି । ଠିକ୍ ସେହିପରି ବିଜୁବାବୁଙ୍କୁ କେତେକ କଳିଙ୍ଗ ଷଣ୍ଢ ଏବଂ ବାଇଆ ବିଜୁ ଭାବରେ କହିଥାନ୍ତି । କାଳିଆଠାକୁର ହୁଅନ୍ତୁ କି ବାଇଆ ବିଜୁ ହୁଅନ୍ତୁ ଏ ଦୁହେଁ ହେଲେ— ଓଡ଼ିଆ ପ୍ରାଣର ଦେବତା । ଏ କଥାକୁ ସମସ୍ତେ ମର୍ମେ ମର୍ମେ ହୃଦୟଙ୍ଗମ କରନ୍ତି ସତ; କିନ୍ତୁ କେତେକ ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ନିଜର ସ୍ଥିତିରକ୍ଷା କରିବା ଉଦ୍ଦେଶ୍ୟରେ କେବଳ ତାଙ୍କର ଦେବତ୍ୱକୁ ଉପର ମନରେ ସ୍ୱୀକାର କରନ୍ତି ନାହିଁ ।

ବିଜୁବାବୁଙ୍କ ତ୍ୟାଗ, ନିଷ୍ଠା, ଦେଶପ୍ରେମ ଏବଂ ଜାତୀୟ ସ୍ୱାଭିମାନ ସହିତ ପ୍ରତ୍ୟେକ ଓଡ଼ିଆ ପରିଚିତ ଥା'ନ୍ତି । ତେଣୁ ୧୯୭୭ ମସିହାରେ ଗଠିତ ଜନତା ଦଳ ବିଜୁବାବୁଙ୍କ ନେତୃତ୍ୱରେ ଓଡ଼ିଶାରେ ଉଭୟ ବିଧାନସଭା ଓ ଲୋକସଭା ଆସନରେ ବିପୁଳ ସଂଖ୍ୟାରେ ବିଜୟୀ ହେଲା । କେନ୍ଦ୍ରରେ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଗଠିତ ସରକାରରେ ବିଜୁବାବୁ ହେଲେ— ତାଙ୍କର ଚିରଇପ୍‌ସିତ ଇସ୍ପାତ ଓ ଖଣିମନ୍ତ୍ରୀ । ଏହି ସମୟ ମଧ୍ୟରେ ତାଙ୍କର ସମସ୍ତ କାର୍ଯ୍ୟବ୍ୟସ୍ତତା ଭିତରେ ବି ତାଙ୍କର ପ୍ରିୟ ଓଡ଼ିଶାର ବିକାଶ କଥାକୁ ସେ ଭୁଲି ନଥିଲେ । ତେଣୁ ସେ ନିଜର ବନ୍ଧୁ ଶ୍ରୀ ନୀଳମଣି ରାଉତରାୟଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେଇ କେନ୍ଦ୍ରରୁ ସମସ୍ତ ସହଯୋଗ ପାଇଁ ହାତ ଖୋଲିଦେଲେ । ଶିଳ୍ପର ବିକାଶ ହିଁ ରାଜ୍ୟର ବିକାଶ, ଏଥିପାଇଁ ସେ ସାରାଜୀବନ ସ୍ୱପ୍ନ ଦେଖୁଥିଲେ । ତେଣୁ ପ୍ରଥମେ ସେ କୋରାପୁଟଠାରେ ଗଚ୍ଛିତ ଥିବା ଅମାପ ବକ୍ସାଇଟ୍ ପଥରକୁ କାମରେ ଲଗାଇବା ପାଇଁ ଦାମନଯୋଡ଼ିଠାରେ ଆଲୁମିନିୟମ କାରଖାନା ବସାଇବାକୁ ସ୍ଥିରକଲେ ।

ଏଥିପାଇଁ ସମସ୍ତ ପ୍ରାଥମିକ କାର୍ଯ୍ୟ ତୁରନ୍ତ ଶେଷ କଲେ । ପାରାଦ୍ୱୀପଠାରେ ଦ୍ୱିତୀୟ ଇସ୍ପାତ କାରଖାନା ପାଇଁ ପ୍ରାଥମିକ ବ୍ୟବସ୍ଥା କଲେ । ମହାନଦୀ ବ୍ୟାରେଜର ଶୁଭ ଦିଆଗଲା । କେନ୍ଦୁଝରଠାରୁ ୧୨ କି.ମି. ଦୂର ପଳାଶପଙ୍ଗାଠାରେ ଓଡ଼ିଶା ସ୍ପଞ୍ଜ ଆଇରନ୍ କାରଖାନା, ଓଡ଼ିଶାର ବୃହତ୍ ଇନ୍ଦ୍ରାବତୀ ବହୁମୁଖୀ ଯୋଜନା, କୁଆଁରିଆ ଯୋଜନା ଓ ସମଲ ବ୍ୟାରେଜ ପ୍ରଭୃତି ବହୁମୁଖୀ ଯୋଜନା ଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ସମସ୍ତ ବ୍ୟବସ୍ଥା କରିଦେଲେ ।

ଓଡ଼ିଶାର ଦୁର୍ଭାଗ୍ୟ— କେନ୍ଦ୍ରରେ ମୋରାରଜୀଙ୍କ ନେତୃତ୍ୱରେ ଗଠିତ ସରକାର ବେଶିଦିନ ତିଷ୍ଠି ରହିପାରିଲା ନାହିଁ । ଲୋକଙ୍କର ଆଶା ନିରାଶାରେ ପରିଣତ ହୋଇଗଲା । ଚରଣ ସିଂହଙ୍କ ମନ୍ତ୍ରୀମଣ୍ଡଳରେ ରହି ବିଜୁବାବୁ ଓଡ଼ିଶା ପାଇଁ କିଛି କାମ କରିଯିବେ ବୋଲି ଯେଉଁ ଚିନ୍ତା କରିଥିଲେ, ତାହା ମଧ୍ୟ ସଫଳ ହେଇପାରିଲା ନାହିଁ । ଚରଣ ସିଂହଙ୍କ ସରକାର ମଧ୍ୟ ବେଶି ଦିନ ରହିପାରିଲା ନାହିଁ । ଲୋକେ ବିରକ୍ତ ହେଇଗଲେ । ଜନତା ଦଳ ଉପରେ ଆଉ ତାଙ୍କର ଆସ୍ଥା ରହିଲା ନାହିଁ । ବିଜୁବାବୁଙ୍କର ପୁଣି ଦୁର୍ଦ୍ଦିନ ଆସିଗଲା । ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଇନ୍ଦିରାଗାନ୍ଧୀ ପୁଣି କ୍ଷମତାକୁ ଆସିଗଲେ । ଓଡ଼ିଶାରେ ଜନତା ଦଳରୁ କେବଳ ମାତ୍ର ଜଣେ ବିଜୁବାବୁ ବିଜୟୀ ହେଲେ । ଓଡ଼ିଶା ବିଧାନସଭାକୁ ମଧ୍ୟ ସେ ନିର୍ବାଚିତ ହୋଇଥିଲେ । କିନ୍ତୁ ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ସେ ଲୋକସଭାର ସଭ୍ୟ ହୋଇ ରହିଲେ ।

ବିଜୁବାବୁ ଜଣେ ଆଶାବାଦୀ ମଣିଷ ହୋଇଥିବାରୁ ସେ ହତାଶ ହୋଇ ନଥିଲେ । ସେ ଯେତେବେଳେ ଯେଉଁଭଳି ଅବସ୍ଥାରେ ଥାଆନ୍ତୁ ନା କାହିଁକି, ସବୁବେଳେ ସେ ଓଡ଼ିଶାର ବିକାଶ କଥା ହିଁ ଚିନ୍ତା କରୁଥିଲେ । ତଥାପି ତାଙ୍କୁ ଲୋକଙ୍କ ନିକଟରେ ପୁଣିଥରେ ବିଶ୍ୱାସଭାଜନ ହେବାକୁ ପ୍ରାୟ ଦଶବର୍ଷ ଲାଗିଥିଲା ।

୧୯୯୦ ମସିହା ନିର୍ବାଚନରେ ବିଜୁବାବୁଙ୍କ ଉପରେ ଲୋକେ ପୂର୍ଣ୍ଣ ଆସ୍ଥା ପ୍ରକଟ କଲେ । ୧୪୭ ଟି ବିଧାନସଭା ଆସନରୁ ୧୨୩ଟି ଆସନ ଜିଣି ସେ ନୂତନ ରେକର୍ଡ ସୃଷ୍ଟି କଲେ, ଫଳରେ ବିରୋଧୀ ଦଳ ହେବାପାଇଁ କୌଣସି ଦଳ ସମର୍ଥ ହେଇପାରିନଥିଲେ । ବିଜୁବାବୁଙ୍କ ନେତୃତ୍ୱରେ ତାଙ୍କ ଜନ୍ମଦିନରେ ଏକ ଦୃଢ଼ ସରକାର ଗଠିତ ହେଲା । ଦୀର୍ଘ ୨୭ବର୍ଷ ପରେ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ମଣ୍ଡନ କରି ୧୯୯୫ ମସିହା ପର୍ଯ୍ୟନ୍ତ କ୍ଷମତାରେ ରହିଥିଲେ ।

ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ପଦରେ ଆଇ ବିଜୁବାବୁ ପୁଣି ଓଡ଼ିଶାରେ ଶିଳ୍ପର ବିକାଶ ପାଇଁ ଲାଗିପଡ଼ିଲେ । ତାଙ୍କର ଇପ୍‌ସିତ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ସେ ପ୍ରାଣପଣେ ଲାଗି ରହିଲେ । କେନ୍ଦ୍ର ସରକାରଙ୍କ ଅସହଯୋଗ ଲକ୍ଷ୍ୟ କରି ସେ ନିଜେ ବିଭିନ୍ନ ଦେଶ ଭ୍ରମଣ କରି ଶିଳ୍ପୋଦ୍ୟୋଗୀମାନଙ୍କୁ ଓଡ଼ିଶାରେ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଆହ୍ୱାନ ଜଣାଇଥିଲେ । ବିଜୁବାବୁ ପରିଣତ ବୟସରେ ପଦାର୍ପଣ କରିଥିବାରୁ ଏବଂ ଭାରତୀୟ ରାଜନୀତିର ଗତି ପରିବର୍ତ୍ତିତ ହୋଇଯାଇଥିବାରୁ ସେ ଯେଉଁସବୁ ପଦକ୍ଷେପ ନେଇଥିଲେ, ସେଥିରୁ ଅଧିକାଂଶ ସଫଳ ହେଇପାରିଲା ନାହିଁ । ତାଙ୍କର ଅନ୍ୟାନ୍ୟ କାର୍ଯ୍ୟଗୁଡ଼ିକ ମଧ୍ୟରୁ ସେ ମାତୃଜାତିର ଉତ୍‌ଥାନ ନିମନ୍ତେ ବିଭିନ୍ନପ୍ରକାର ପ୍ରକଳ୍ପର ଶୁଭାରମ୍ଭ କରିଥିଲେ । ନାରୀଶିକ୍ଷାର ପ୍ରସାର ନିମନ୍ତେ ବହୁଳ ସଂଖ୍ୟାରେ ସ୍କୁଲ ଓ କଲେଜ ପ୍ରତିଷ୍ଠା କରିଥିଲେ । ମହିଳାମାନଙ୍କ ଦ୍ୱାରା ପରିଚାଳିତ ସ୍ୱତନ୍ତ୍ର ବ୍ୟାଙ୍କ, ସ୍ୱତନ୍ତ୍ର ଥାନାର ପ୍ରବର୍ତ୍ତନ ତଥା ମହିଳାମାନଙ୍କ ପାଇଁ ୩୦ଭାଗ ଚାକିରିରେ ସ୍ଥାନସଂରକ୍ଷଣ ଏବଂ ରାଜନୀତିରେ ମହିଳାଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନସଂରକ୍ଷଣ ବ୍ୟବସ୍ଥା ଥିଲା— ବିଜୁବାବୁଙ୍କର ମହାନ ଅବଦାନ । ଏଥିପାଇଁ ଅବଶ୍ୟ ପ୍ରଥମେ ବିଜୁବାବୁ ସମାଲୋଚନାର ଶରବ୍ୟ ହୋଇଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ଜାତୀୟସ୍ତରରେ ବିଜୁବାବୁଙ୍କ ଚିନ୍ତାଧାରା କାର୍ଯ୍ୟକାରୀ ହେଲା ।

ବିଜୁବାବୁଙ୍କ ଶାସନ କାଳରେ ସେ ଯେଉଁସବୁ ଦୁଃସାହସିକ କାର୍ଯ୍ୟମାନ ହାତକୁ ନେଇଥିଲେ, ତା' ମଧ୍ୟରେ ଥିଲା— ଓଡ଼ିଶାର ନୂତନ ଜିଲା ଗଠନ । ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ— ୧୯୫୨ ମସିହା ପ୍ରଥମ ସାଧାରଣ ନିର୍ବାଚନ ବେଳକୁ ଭାରତରେ ମୋଟ ୩୦୦ଟି ଜିଲା ଥିଲା । ୧୯୯୨ ମସିହା ବେଳକୁ ଏହା ୪୭୧ରେ ପହଞ୍ଚିଲା । କିନ୍ତୁ ଦୁଃଖର କଥା— ଓଡ଼ିଶାର ଜିଲା ସଂଖ୍ୟା ସେହି ୧୩ରେ ସୀମିତ ଥିଲା । ଓଡ଼ିଶା ପ୍ରଶାସନର ଦକ୍ଷତା ବଢ଼ାଇବାକୁ ବିଭିନ୍ନ ସମୟରେ ସରକାର କମିଶନ ବସାଇଥିଲେ, ନୂତନ ଜିଲା ସୃଷ୍ଟି ପାଇଁ ଚେଷ୍ଟା କରିଥିଲେ, କିନ୍ତୁ କାର୍ଯ୍ୟକାରୀ କରିପାରି ନଥିଲେ । ବିଭିନ୍ନ ଅଞ୍ଚଳରେ ଆନ୍ଦୋଳନ, ଗଣ୍ଡଗୋଳର ଆଶଙ୍କା ଥିବାରୁ କୌଣସି ସରକାର ଏଭଳି ଦୁଃସାହସିକ କାର୍ଯ୍ୟରେ ହାତ ଦେଇପାରୁ ନଥିଲେ ।

ବିଜୁବାବୁ ଜିଲା ପୁନର୍ଗଠନକୁ ଅଗ୍ରାଧିକାର ଦେଇ ୧୯୯୦ ମସିହାରେ ନୂତନ ୧୦ଟି ଜିଲା ଘୋଷଣା କରିଦେଲେ । ରାଜ୍ୟର ବିଭିନ୍ନ ଅଞ୍ଚଳରୁ ନେତାମାନେ ପୁଣି କେତୋଟି ଜିଲା ପାଇଁ ଦାବି କରିବାରୁ ବିଜୁବାବୁ ୧୩ଟି ଜିଲାକୁ ୩୦ଟି ଜିଲାରେ ପରିଣତ କରିଦେଲେ । ସେ କାହାରି ସମାଲୋଚନାକୁ ଖାତିର ନକରି ସାହସର ସହିତ ନିଜ କାମ କରିଚାଲିଲେ । ଫଳରେ ଓଡ଼ିଶା ପ୍ରଶାସନର ଦକ୍ଷତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଜନସାଧାରଣ ଅଯଥା ହଇରାଣରୁ ରକ୍ଷା ପାଇଲେ ।

ଜିଲା ପରିଷଦ ଗଠନ ଏବଂ ଆଡ଼ମ୍ବରପୂର୍ଣ୍ଣ ବିବାହକୁ ସୀମିତ କରିବା ଆଇନ ପାସ୍ କରି ସେ ରାଜ୍ୟର ଜୀବନଧାରାକୁ ଉନ୍ନତ କରିବାକୁ ଚେଷ୍ଟା କରିଥିଲେ ।

ଶ୍ରମିକମାନଙ୍କର ଦୈନିକ ମଜୁରୀକୁ ସେ ୧୦ଟଙ୍କାରୁ ଏକାଥରେ ୨୫ଟଙ୍କା ବୃଦ୍ଧି କରିଦେଇ ରାଜ୍ୟରେ ତଥା ସମଗ୍ର ଦେଶରେ ଚମକ ସୃଷ୍ଟି କରିଦେଲେ । ଗ୍ରାମାଞ୍ଚଳରେ ଲୋକମାନଙ୍କର ନିଜସ୍ୱ ବାସଗୃହ ତିଆରି ପାଇଁ

'କଳିଙ୍ଗ କୁଟୀର' ଯୋଜନା ଆରମ୍ଭ କଲେ । ମହିଳା ବିକାଶ ନିଗମ, ମହିଳା କମିଶନ ଗଠନ ତଥା ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କଲେ । ଚାକିରି ପାଇଁ ଅପେକ୍ଷା କରି ରହିଥିବା ପ୍ରାର୍ଥୀମାନଙ୍କର ବୟସ ସୀମା କୋହଳ କଲେ ।

ଶିଳ୍ପର ଅଭିବୃଦ୍ଧି ପାଇଁ ନୂତନ ଶିଳ୍ପନୀତି ପ୍ରଣୟନ କରି ୫ଟି ନୂଆ ଇସ୍ପାତ କାରଖାନା, ଦୁଇଟି ଆଲୁମିନା କାରଖାନା, ଗୋଟିଏ ଲେଖାଏଁ ପେଟ୍ରୋ କେମିକାଲ୍ ସୋଡ଼ିୟମ୍ ନାଇଟ୍ରେଟ୍ ଓ ନାଇଟ୍ରିଟ୍ ଏବଂ ଡିସ୍‌ପୋଜାଲ ସିରିଞ୍ଜ କାରଖାନା ପ୍ରତିଷ୍ଠା ପାଇଁ ପଦକ୍ଷେପ ଗ୍ରହଣ କଲେ । ବାହାବଳପୁରଠାରେ କ୍ଷୁଦ୍ର ପୋତାଶ୍ରୟ ନିର୍ମାଣ, ପାରାଦୀପ ବନ୍ଦରର ଉନ୍ନୟନ ଓ ଗୋପାଳପୁର ବନ୍ଦରକୁ ସବୁଦିନିଆ ବନ୍ଦରରେ ପରିଣତ ପାଇଁ ସ୍ୱତନ୍ତ୍ର ଯୋଜନା କଲେ । କଳିଙ୍ଗର ହୃତଗୌରବର ପୁନରୁଦ୍ଧାର ପାଇଁ ସେ ଐତିହାସିକ କଳିଙ୍ଗ ବାଲିଯାତ୍ରାର ଆୟୋଜନ କରିଥିଲେ । ବିଶ୍ୱବିଖ୍ୟାତ ଶ୍ରୀମନ୍ଦିରର ସୁରକ୍ଷା ପାଇଁ ସୁପରିକଳ୍ପିତ ବିଜ୍ଞାନସମ୍ମତ ପଦକ୍ଷେପ ଗ୍ରହଣ କଲେ ।

ଯଦିଓ ସେ ଅନେକ ପ୍ରଶାସନିକ ତଥା ଅର୍ଥନୈତିକ ସଂସ୍କାର ମାଧ୍ୟମରେ ଜନସାଧାରଣଙ୍କଠାରେ ବିତର୍କିତ ହୋଇଥିଲେ, ତଥାପି ସେ ଥିଲେ କୋଟି କୋଟି ଓଡ଼ିଆଙ୍କ ହୃଦୟର ଏକମାତ୍ର ପ୍ରିୟନେତା — ବିଜୁବାବୁ । ସେ ଥିଲେ ଅତ୍ୟନ୍ତ ଦୂରଦ୍ରଷ୍ଟା । ତେଣୁ ସେ ଆଜି ଯାହା ଚିନ୍ତା କରୁଥିଲେ, ସେ କଥାକୁ ଅନ୍ୟମାନେ ପ୍ରାୟ ଦଶବର୍ଷ ପରେ ଉଚିତ ବୋଲି ମନେକରୁଥିଲେ । ଯୁଗର ପରିବର୍ତ୍ତନ ଓ ବର୍ତ୍ତମାନର ଆବଶ୍ୟକତାକୁ ଦୃଷ୍ଟିରେ ରଖି ସେ ସରକାରଙ୍କ ଦୃଷ୍ଟିକୋଣ ବଦଳାଇବାକୁ ଆହ୍ୱାନ ଜଣାଉଥିଲେ । ରାଜ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା ଦାବି କରିବା, କେନ୍ଦ୍ର-ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ ପ୍ରଶ୍ନ ଉତ୍‌ଥାପନ କରିବା, ବାରମ୍ବାର ସଂଶୋଧନ ଦ୍ୱାରା ସମ୍ବିଧାନକୁ ବିକୃତ ନକରି ନୂତନ ସମ୍ବିଧାନ ପ୍ରଣୟନ ପାଇଁ ସଭା ଆହୂତ କରିବା, ଅନୁନ୍ନତ ଶ୍ରେଣୀର ଲୋକଙ୍କ ପାଇଁ ଉତ୍ତମ ଶାସନ-ବ୍ୟବସ୍ଥା କରିବା, ଗଣତନ୍ତ୍ରର ବିକଳ୍ପ

ଅନୁସନ୍ଧାନ କରିବା ପାଇଁ ଆହ୍ୱାନ ଦେବା, ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଶାସନ-ତାନ୍ତ୍ରିକ ଏକକ ଜିଲାର ପୁନର୍ଗଠନ କରିବା ଓ ବିଶେଷ ସୁଖ-ସୁବିଧା ଉପଭୋଗ କରୁଥିବା ବର୍ଗର ଲୋକମାନଙ୍କର ପ୍ରାଧାନ୍ୟ ହ୍ରାସ କରିବା ଭଳି ପ୍ରଗତିଶୀଳ ଚିନ୍ତାଧାରା ବିଜୁବାବୁଙ୍କ ଦୂରଦୃଷ୍ଟିର ପରିଚୟ ଦେଇଥାଏ । ଯେଉଁମାନେ ତାଙ୍କର ନୂତନ ଚିନ୍ତାଧାରାର ମୂଳତତ୍ତ୍ୱକୁ ବୁଝି ନପାରନ୍ତି, ସେମାନେ ହଠାତ୍ ତାଙ୍କୁ ସମାଲୋଚନା କରି କହିପକାନ୍ତି— ବୁଢ଼ା ମୁଣ୍ଡ ଖରାପ ହେଇଗଲାଣି । ସେ ବାଇଆ ବିଜୁ । କିନ୍ତୁ ବିଜୁବାବୁଙ୍କର ପ୍ରତ୍ୟେକ ବାକ୍ୟ, ପ୍ରତ୍ୟେକ ଶବ୍ଦରେ ଥିଲା— ନୂତନତା, ଚଞ୍ଚଳତା ଏବଂ ପରିବର୍ତ୍ତନର ଆହ୍ୱାନ, ଯାହାକୁ ପରବର୍ତ୍ତୀ କାଳରେ ଅନ୍ୟମାନେ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ବିଜୁବାବୁଙ୍କ ସେଦିନର କଥା ଉପଯୁକ୍ତ ଥିଲା ବୋଲି ସ୍ୱୀକାର କରିଛନ୍ତି ।

## ବିଜୁବାବୁଙ୍କ ଶେଷ ଜୀବନ

ବିଜୁବାବୁ କଟକ ଓ ଆସ୍କା ଦୁଇଟି ଲୋକସଭା ଆସନରୁ ଜୟଯୁକ୍ତ ହୋଇ ୧୯୯୬ ମସିହାରେ ଗଠିତ ଦଶମ ଲୋକସଭାର ଜଣେ ପ୍ରମୁଖ ସଭ୍ୟଭାବେ ଯୋଗଦାନ କଲେ । ତା' ପୂର୍ବରୁ ସେ ଭୁବନେଶ୍ୱର ବିଧାନସଭା ଆସନର ଜଣେ ସଦସ୍ୟ ଥିଲେ । ସେ ଥିଲେ ଜନତାଦଳର ସୁପ୍ରିମୋ । ତାଙ୍କୁ ପ୍ରଧାନମନ୍ତ୍ରୀ ନିର୍ମାତା ଭାବେ ଏବଂ ଦଳର ସଙ୍କଟମୋଚକ ନେତା ଭାବେ ସମସ୍ତେ ମାନି ନେଇଥାଆନ୍ତି । କେନ୍ଦ୍ରରେ ଜନତା ଦଳ ନେତୃତ୍ୱରେ ଯେଉଁ ମୋର୍ଚ୍ଚା ସରକାର ଗଠନ କରାଗଲା, ବିଜୁବାବୁ ଜଣେ ଅତି ବରିଷ୍ଠ ନେତା ହୋଇଥିବାରୁ ସେ ସରକାରରେ ସାମିଲ ହେଲେ ନାହିଁ । ସରକାରଙ୍କୁ ଶକ୍ତିଶାଳୀ କରିବା ପାଇଁ ଏବଂ ବିଭିନ୍ନ କାର୍ଯ୍ୟରେ ସହାୟତା କରିବା ପାଇଁ

ସେ ବିଭିନ୍ନ ପରାମର୍ଶଦାତା କମିଟିରେ ରହିଲେ । ଲୋକପ୍ରିୟ ବଜେଟ୍ ପ୍ରସ୍ତୁତ କାର୍ଯ୍ୟରେ କେନ୍ଦ୍ର ଅର୍ଥମନ୍ତ୍ରୀଙ୍କୁ ସେ ବିଭିନ୍ନ କ୍ଷେତ୍ରରେ ପରାମର୍ଶ ଦେଇଥିଲେ । ପରେ ସେ ଆସ୍କା ଲୋକସଭା ଆସନରେ ରହି କଟକ ଆସନ ଛାଡ଼ି ଦେଇଥିଲେ । ୩୦ ବର୍ଷ ବୟସରୁ ସେ ରାଜନୀତିରେ ପ୍ରବେଶ କରି ଅସଂଖ୍ୟ ସମସ୍ୟାରେ ଜଡ଼ିତ ହୋଇଛନ୍ତି, ଅନେକ ସମସ୍ୟାର ସମାଧାନ ମଧ୍ୟ କରିଛନ୍ତି । ସୁନାମ-ଦୁର୍ନାମକୁ ସେ ଖାତିର କରନ୍ତି ନାହିଁ । ଜାତୀୟ ସ୍ୱାର୍ଥକୁ ଦୃଷ୍ଟିରେ ରଖି ସେ ଅନେକ ସମୟରେ ବିତର୍କିତ ମତପ୍ରକାଶ ଫଳରେ ହଟଚମଟ ସୃଷ୍ଟି କରି ଖବର-କାଗଜର ପ୍ରଥମ ପୃଷ୍ଠାରେ ସ୍ଥାନ ପାଆନ୍ତି ।

ଓଡ଼ିଶା ରାଜନୀତିରେ ବିଜୁବାବୁଙ୍କ ରାଜନୈତିକ ଜୀବନ ଥିଲା ଏକ ଅର୍ଦ୍ଧଶତାବ୍ଦୀର ଇତିହାସ । ବୈଚିତ୍ର୍ୟମୟ ଜୀବନ, ଓଡ଼ିଶା ତଥା ଓଡ଼ିଆମାନଙ୍କ ପ୍ରତି ତାଙ୍କର ଅଫୁରନ୍ତ ସ୍ନେହ, ମମତା ଓ ଉଦାରତା ଏବଂ ଉତ୍କଳ ଜନନୀଙ୍କ ପ୍ରତି ତାଙ୍କର ଅନୁପମ ଅନୁରାଗ ଥିଲା— ଅପୂର୍ବ ତଥା ଅସାଧାରଣ । ନିଜର ଦୁର୍ଦ୍ଦମନୀୟ ସାହସ ଇଚ୍ଛାଶକ୍ତି ବଳରେ ସେ ପରାଜୟକୁ ବିଜୟରେ ପରିଣତ କରିପାରୁଥିଲେ । ନିଜକୁ ସେ କଳିଙ୍ଗ ସମ୍ରାଟ ଖାରବେଳଙ୍କର ଦାୟାଦ ବୋଲି କହି ଛାତି ଫୁଲାଇ ଯାଉଥିଲେ । ତାଙ୍କର ଦୂରଦୃଷ୍ଟି ଫଳରେ ସେ ହୋଇଉଠିଥିଲେ, ସର୍ବଭାରତୀୟ ସ୍ତରରେ ଜଣେ ବରିଷ୍ଠ ନେତା । ଦେଶର ଗୁରୁଦାୟିତ୍ୱରେ ଥିବା ନେତା ତଥା ପ୍ରଧାନମନ୍ତ୍ରୀ ତାଙ୍କୁ ସମ୍ମାନ ଜଣାଇ ପରାମର୍ଶ ଲୋଡୁଥିଲେ ।

ନିଜର ବୟସ ଏବଂ ଶାରୀରିକ ଅକ୍ଷମତା ପ୍ରତି ସେ କେବେ ଦୃଷ୍ଟି ଦେଇନାହାନ୍ତି । ଜଣେ ଯୁବକର ଉଦ୍ଦାମତା ଭରି ରହିଥିଲା— ତାଙ୍କ ନିକଟରେ । କେନ୍ଦ୍ର ସରକାରରେ ହେଉ କି ରାଜ୍ୟର ବିଧାୟକମାନଙ୍କ ମଧ୍ୟରେ ହେଉ କେବେ ଯଦି କୌଣସି ମତାନ୍ତର ବା ଦ୍ୱନ୍ଦ୍ୱ ଉପୁଜୁଥିଲା, ସେତେବେଳେ ସଙ୍କଟ-ତାରଣ ବିଜୁବାବୁ ଲୋଡ଼ା ହୁଅନ୍ତି । ତାଙ୍କର ଶେଷ ନିଷ୍ପତ୍ତିରୁ ହିଁ ସବୁ ଦ୍ୱନ୍ଦ୍ୱର ଅବସାନ ଘଟେ ।

ବିଜୁବାବୁ ଏହିଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଦିଲ୍ଲୀରୁ ଧାଇଁ ଆସିଥିଲେ ଓଡ଼ିଶାକୁ । ମାର୍ଚ୍ଚ ମାସର ୨୮ ତାରିଖ ଦିନ ସେ ଜନତାଦଳ ବିଧାୟକମାନଙ୍କର ଏକ ବୈଠକ ଡକାଇଥିଲେ । ତା'ପରଦିନ ଛାତ୍ର ଜନତାର ଏକ ବୈଠକରେ ଇଂରାଜୀରେ ଭାଷଣ ଦେଇଥିଲେ ।

ଏହି ବୈଠକରେ ଭାଷଣ ଦେଇସାରିବା ପରେ ବିଜୁବାବୁ ଛାତିରେ ଯନ୍ତ୍ରଣା ଅନୁଭବ କଲେ । ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ବିଜୁବାବୁ ୧୯୮୧ ମସିହାରେ ଟେକ୍ସାସ୍ ହସ୍‌ପିଟାଲରେ ତାଙ୍କର କାର୍ଡିଆକ୍ ଅସ୍ତ୍ରୋପଚାର କରାଇଥିଲେ । ସେହିଦିନଠାରୁ ତାଙ୍କର ସ୍ୱାସ୍ଥ୍ୟର ଅବନତି ଘଟୁଥିଲା; କିନ୍ତୁ ବିଜୁବାବୁ ନିଜ ସ୍ୱାସ୍ଥ୍ୟପ୍ରତି ଚିନ୍ତିତ ନଥିଲେ— ସେ ଥିଲେ ବର୍ତ୍ତମାନସର୍ବସ୍ୱ ମଣିଷ ।

ବିଜୁବାବୁଙ୍କ ଛାତିରେ ଯନ୍ତ୍ରଣା ବୃଦ୍ଧି ପାଇବାରୁ ତାଙ୍କୁ ତୁରନ୍ତ ଦିଲ୍ଲୀ ନିଆଯାଇ ରାମ ମନୋହର ଲୋହିଆ ହସ୍‌ପିଟାଲରେ ଭର୍ତ୍ତି କରି ଦିଆଗଲା । ତା'ପରଦିନ ବିଜୁବାବୁଙ୍କ ଅବସ୍ଥା ଉଦ୍‌ବେଗଜନକ ହେବାରୁ ତାଙ୍କୁ ଏସକର୍ଟସ୍ ହସପିଟାଲର ଇଣ୍ଟେନ୍‌ସିଭ୍ କରୋନାରୀ କେୟାର ୟୁନିଟ୍‌କୁ ସ୍ଥାନାନ୍ତରିତ କରାଯାଇଥିଲା । ସେଠାରେ ତାଙ୍କର କୃତ୍ରିମ ଶ୍ୱାସକ୍ରିୟା ବ୍ୟବସ୍ଥା କରାଗଲା ।

ବିଜୁବାବୁ ପ୍ରତ୍ୟେକ କ୍ଷେତ୍ରର ଲଢ଼ିଛନ୍ତି । ସାଂଘାତିକ ଶ୍ୱାସରୋଗ ସହିତ ମଧ୍ୟ ସେ ଦୀର୍ଘଦିନ ଧରି ଲଢିଚାଲିଲେ । ଅସୁସ୍ଥ ଖବର ପାଇ ବିଜୁବାବୁଙ୍କର ପତ୍ନୀ, ପୁତ୍ର, କନ୍ୟା ପରିବାରର ଅନ୍ୟ ସଦସ୍ୟମାନେ ଆସି ସେଠାରେ ପହଞ୍ଚି ତାଙ୍କର ସେବାଯତ୍ନ କଲେ । ବିଜୁବାବୁଙ୍କର ବଡ଼ପୁଅ ପ୍ରେମବାବୁ ଜଣେ ପ୍ରବାସୀ ବିଶିଷ୍ଟ ଶିଳ୍ପପତି । ସାନପୁଅ ନବୀନବାବୁ ମଧ୍ୟ ଜଣେ ଶିଳ୍ପପତି, ଲେଖକ । ଝିଅ ଗୀତା ମେହେଟ୍ଟା ହେଉଛନ୍ତି ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲେଖିକା । ତାଙ୍କର ସ୍ୱାମୀ ସନି ମେହେଟ୍ଟା ଆମେରିକାର ଏକ ପ୍ରଖ୍ୟାତ ପ୍ରକାଶନ ସଂସ୍ଥା ଏଡ୍‌ଲଫ୍‌ନୋଫ୍‌ର ସଭାପତି ଅଛନ୍ତି ।

# କଳିଙ୍ଗ ବୀରଙ୍କ ଶେଷ ପରାଜୟ

ଜୀବନବ୍ୟାପୀ ବିଜୁବାବୁ ଲଢ଼େଇ କରିଛନ୍ତି । ବହୁବାର ବିଜୟର ଟିକା ଲାଗିଛି ତାଙ୍କର ଲଲାଟ ପଟଳରେ । ବହୁବାର ସେ ପରାଜୟକୁ ସ୍ୱୀକାର କରିଛନ୍ତି ସତ, କିନ୍ତୁ ସେ ସବୁକୁ ସେ ବିଜୟରେ ପରିଣତ କରିପାରିଥିଲେ । ପରାଜୟର ଗ୍ଲାନି ତାଙ୍କୁ କେବେ ନତମସ୍ତକ କରିଦେଇ ପାରିନଥିଲା ।

ବିଜୟର ଟିକା ବହନ କରିଥିବା ବିଜୟାନନ୍ଦ ଦୀର୍ଘ ୧୯ଦିନ ଧରି ଗୁରୁତର ଶ୍ୱାସରୋଗ ସହିତ ଲଢ଼େଇ କରି ୧୯୯୭ ମସିହା, ଏପ୍ରିଲ ମାସ ୧୭ ତାରିଖ, ଗୁରୁବାର ସୁଦଶାବ୍ରତ ତିଥି, ସକାଳ ୮.୦୫ ମିନିଟ୍‌ରେ ଶେଷ ପରାଜୟ ସ୍ୱୀକାର କଲେ ।

ତାଙ୍କ ଚିକିତ୍ସା ଦାୟିତ୍ୱରେ ଥିବା ଡାକ୍ତରଙ୍କଠାରୁ ପ୍ରକାଶ ଯେ, ଶ୍ୱାସକ୍ରିୟା ବନ୍ଦ ହୋଇଯିବାରୁ ବିଜୁବାବୁ ପରଲୋକ ଗମନ କରିଛନ୍ତି । ଏହା ପୂର୍ବରୁ ସେ ଦୁଇଦିନ ଧରି ଅତି ସଂକଟଜନକ ଅବସ୍ଥାରେ ଥିଲେ ।

ତାଙ୍କର ମୃତ୍ୟୁ ସମ୍ବାଦ ପାଇବା ମାତ୍ରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଦେବେଗୌଡ଼ା, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ନରସଂହ ରାଓ, ବିରୋଧୀ ଦଳର ନେତା ଶ୍ରୀ ଅଟଳବିହାରୀ ବାଜପେୟୀ ଓ କେନ୍ଦ୍ରମନ୍ତ୍ରୀମଣ୍ଡଳର ସଦସ୍ୟମାନେ ତାଙ୍କର ଶେଷଦର୍ଶନ କରିଥିଲେ ।

ପରଲୋକଗତ ନେତାଙ୍କ ମରଶରୀରକୁ ତାଙ୍କ ବାସଭବନକୁ ଆଣି ଜନସାଧାରଣଙ୍କ ଦର୍ଶନ ପାଇଁ ରଖାଯାଇଥିଲା । ସେଠାରେ ପ୍ରଥମେ ପ୍ରଧାନମନ୍ତ୍ରୀ

ପୁଷ୍ପଗୁଚ୍ଛ ପ୍ରଦାନ କରି ଦେଶ ତରଫରୁ ତାଙ୍କୁ ସମ୍ମାନପ୍ରଦର୍ଶନ କଲେ । ପରେ ପରେ ଦେଶର ବହୁ ବିଶିଷ୍ଟ ନେତା, ମନ୍ତ୍ରୀମଣ୍ଡଳର ସଦସ୍ୟ ତଥା ଭାରତର ରାଷ୍ଟ୍ରପତି, ଉପରାଷ୍ଟ୍ରପତି ତାଙ୍କ ମରଶରୀର ଉପରେ ପୁଷ୍ପମାଲ୍ୟ ଓ ପୁଷ୍ପଗୁଚ୍ଛ ପ୍ରଦାନ କରି ପ୍ରିୟନେତାଙ୍କୁ ଶେଷସମ୍ମାନ ପ୍ରଦର୍ଶନ କଲେ । ବିଜୁବାବୁଙ୍କ ପତ୍ନୀ ଶ୍ରୀମତୀ ଜ୍ଞାନଦେବୀ ସେଇଠି ଉପସ୍ଥିତ ଥାଆନ୍ତି ।

ବିଜୁବାବୁ ଥିଲେ ଜାତୀୟସ୍ତରର ମହାନ୍ ନେତା । ତେଣୁ ତାଙ୍କ ସ୍ମୃତିରେ ସମଗ୍ର ଦେଶରେ ଶୋକର ଛାୟା ଖେଳିଗଲା । ଦେଶବିଦେଶରୁ ଶୋକବାର୍ତ୍ତା ପହଞ୍ଚିବାରେ ଲାଗିଲା । ଓଡ଼ିଶା ସରକାର ସାତଦିନ ପାଇଁ ସାରାରାଜ୍ୟରେ ଶୋକ ପାଳନ କଲେ । ଇଣ୍ଡୋନେସିଆ ସରକାର ତାଙ୍କର ପ୍ରିୟତମ ନେତା ତଥା ଭୂମିପୁତ୍ରଙ୍କ ସମ୍ମାନରେ ୨୧ଦିନ ଶୋକପାଳନର ବ୍ୟବସ୍ଥା କଲେ । ପ୍ରଥମ ତିନିଦିନକୁ ସମଗ୍ର ଦେଶରେ ଛୁଟି ଦିବସ ଭାବେ ଘୋଷଣା କରି ତାଙ୍କର ତ୍ରାଣକର୍ତ୍ତା ବିଜୁବାବୁଙ୍କୁ ସମ୍ମାନ ଜଣାଇଲେ । ଶେଷରେ ବିଜୁବାବୁଙ୍କ ପରିବାର ସହିତ ପରାମର୍ଶ କରି ଠିକ୍ କରାଗଲା ଯେ, ପ୍ରତିରକ୍ଷା ବିଭାଗର ଏକ ସ୍ୱତନ୍ତ୍ର ବିମାନରେ ବିଜୁବାବୁଙ୍କ ମରଶରୀରକୁ ଭୁବନେଶ୍ୱର ଅଣାଯିବ ଏବଂ ପୁରୀ ସ୍ୱର୍ଗଦ୍ୱାରରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହେବ । ତାଙ୍କ ସହିତ ଭାରତର ପ୍ରଧାନମନ୍ତ୍ରୀ ଓ ଦେଶର ପ୍ରମୁଖ ନେତାମାନେ ମଧ୍ୟ ଓଡ଼ିଶା ଆସି ଓଡ଼ିଆମାନଙ୍କ ଦୁଃଖରେ ସମଦୁଃଖୀ ହେବେ ।

ଏହି ସମ୍ବାଦ ପ୍ରଚ୍ରରିତ ହେବା ମାତ୍ରେ ସମଗ୍ର ଓଡ଼ିଶାର ରାସ୍ତାଘାଟ, ବଜାର, ଅଫିସ୍ ଶୂନ୍‌ଶାନ୍ ହେଇଗଲା । ଲୋକେ ଦଳଦଳ ହୋଇ ବିଜୁବାବୁଙ୍କ ମହାନ୍ ଅବଦାନକୁ ସ୍ମରଣ କରିବାରେ ଲାଗିଲେ । ରାଜ୍ୟସାରା ଶୋକସଭା ଅନୁଷ୍ଠିତ ହେଲା— ସମସ୍ତେ ଅନୁଭବ କଲେ, ତାଙ୍କର ଘରର ମୁରବି ବା ରାଜ୍ୟର ମୁରବି ଆଜି ହାରିଯାଇଛନ୍ତି ।

# ମହାନାୟକଙ୍କର ମହାଯାତ୍ରା

ଓଡ଼ିଶାର ସର୍ବପ୍ରିୟ ଜନନେତାଙ୍କ ମହାଯାତ୍ରା— ଦର୍ଶନ ପାଇଁ ଲକ୍ଷ ଲକ୍ଷ ଶୋକାକୁଳ ଜନତା ଭୁବନେଶ୍ୱର ବିମାନ ବନ୍ଦରରେ ଅପେକ୍ଷା କରିଥାଆନ୍ତି । ବିଜୁବାବୁଙ୍କ ଜୟଧ୍ୱନିରେ ଗଗନପବନ ମୁଖରିତ । ହଜାର ହଜାର ବିଜୁପ୍ରେମୀ ଉଚ୍ଚସ୍ୱରରେ କ୍ରନ୍ଦନରତ ।

ପୂର୍ବ ନିର୍ଦ୍ଧାରିତ ସମୟର ଏକଘଣ୍ଟା ବିଳମ୍ବରେ ଅର୍ଥାତ୍ ସକାଳ ୮.୩୦ ମିନିଟ୍‌ରେ ବିଜୁବାବୁଙ୍କ ମରଶରୀରକୁ ଧରି ପ୍ରତିରକ୍ଷାବାହିନୀର ଏକ ସ୍ୱତନ୍ତ୍ର ବିମାନ ଅବତରଣ କଲା । ଏତେସଂଖ୍ୟକ ଜନତା ସେଠାରେ ଉପସ୍ଥିତ ହେବେ ବୋଲି ପ୍ରଶାସନ କଳ୍ପନା ମଧ୍ୟ କରି ନଥିଲା । ହଠାତ୍ ହଜାର ହଜାର ଜନତା ପୋଲିସ କର୍ଡନ ଭାଙ୍ଗି ବିମାନ ବନ୍ଦର ଭିତରକୁ ପଶି ଯାଇଥିଲେ । ଅନେକ ଲୋକ ବିମାନ ଉପରକୁ ଚଢ଼ିଯାଇଥିଲେ । ମାତ୍ରାଧିକ ଉପସ୍ଥିତ ଜନତାକୁ ସମ୍ଭାଳିବା ସମ୍ଭବ ହୋଇପାରିନଥିଲା ।

ବିଜୁବାବୁଙ୍କ ମରଶରୀର ଜାତୀୟ ସଂପଦ ହୋଇଥିବାରୁ ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ବିମାନବନ୍ଦରର ଉପସ୍ଥିତ ରହି ତାଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ଓଡ଼ିଶା ମନ୍ତ୍ରୀମଣ୍ଡଳର ସଦସ୍ୟବୃନ୍ଦ, ପୂର୍ବତନ ମନ୍ତ୍ରୀ, ବିଧାୟକ ନେତୃସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିମାନେ ବିଜୁବାବୁଙ୍କ ଅନ୍ତିମ ଦର୍ଶନ କରି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ସେଠାରେ ବିଜୁବାବୁଙ୍କୁ **ଗାର୍ଡ ଅଫ୍ ଅନର** ପ୍ରଦାନ କରାଯାଇଥିଲା ।

ଲକ୍ଷ ଲକ୍ଷ ଲୋକଙ୍କ ଗହଳି ଭିତର ଦେଇ ବିଜୁବାବୁଙ୍କ ମହାଯାତ୍ରା ଆରମ୍ଭ ହେଲା । ସୁସଜ୍ଜିତ ଗାଡ଼ିରେ ବିଜୁବାବୁଙ୍କ ରଥ ଚାଲିଲା ନବୀନ

ନିବାସକୁ । ଅଳ୍ପ କେତେକ୍ଷଣ ମଧ୍ୟରେ ନବୀନ ନିବାସ ଲୋକାରଣ୍ୟରେ ପରିଣତ ହୋଇଗଲା । ପ୍ରିୟ ନେତାଙ୍କୁ ଦର୍ଶନ କରିବା ଲାଗି ଆଗରୁ କେତେକ ଗଛ ଉପରେ, ଛାତ ଉପରେ ଚଢ଼ି ଅପେକ୍ଷା କରିଥାଆନ୍ତି ।

ମନ୍ତ୍ରପାଠ, ରାମଧୂନ ଓ ସଂକୀର୍ତ୍ତନମଣ୍ଡଳୀଙ୍କ ଆବେଗପୂର୍ଣ୍ଣ ଧ୍ୱନିରେ ନବୀନ ନିବାସ ପ୍ରକମ୍ପିତ ହେଉଥିଲା । ବିଜୁବାବୁଙ୍କ ମରଶରୀରକୁ ତ୍ରିରଂଗା ପତାକାରେ ଢାଙ୍କି ଦିଆଯାଇଥାଏ । ଲକ୍ଷ ଲକ୍ଷ ଜନତାଙ୍କ ଭିଡ଼ ଓ ଠେଲାପେଲା ସାଙ୍ଗକୁ ଦଳାଚକଟାରେ କେତେଜଣ ଚେତାଶୂନ୍ୟ ହେଲେ । ଉତ୍କଣ୍ଠିତ ଜନତାଙ୍କୁ ନିୟନ୍ତ୍ରଣ କରିବା ମୋଟେ ସମ୍ଭବପର ହେଲାନାହିଁ ।

ପୂର୍ବ କାର୍ଯ୍ୟକ୍ରମ ଅନୁସାରେ କଟକର ଆନନ୍ଦ ଭବନକୁ ବିଜୁବାବୁଙ୍କ ମରଶରୀର ଆସିବାର ଥିଲା; କିନ୍ତୁ ତାହା ହୋଇପାରିଲା ନାହିଁ । ବିମାନ ବନ୍ଦରରୁ ମାତ୍ର ଏକ କି.ମି. ଦୂର ନବୀନ ନିବାସକୁ ଆସିବା ପାଇଁ ଏହି ମହାଯାତ୍ରାକୁ ଏକଘଣ୍ଟାରୁ ଅଧିକ ସମୟ ଲାଗିଥିଲା । ସେଦିନ ୧୨ଟା ୧୫ ମିନିଟରେ ନବୀନ ନିବାସରୁ ତାଙ୍କ ମରଶରୀରକୁ ଜନତାଦଳ ରାଜ୍ୟଶାଖା ମୁଖ୍ୟ କାର୍ଯ୍ୟାଳୟକୁ ଅଣାଯାଇଥିଲା । ସେଠାରେ ଅଳ୍ପ ସମୟ ରଖାଯାଇ ପୁଣି ସହର ପରିକ୍ରମାପୂର୍ବକ ବିଧାନସଭା ସମ୍ମୁଖଭାଗକୁ ଅଣାଯାଇଥିଲା । ସେଠାରେ ବିଧାନସଭା ତରଫରୁ ତାଙ୍କୁ ରାଷ୍ଟ୍ରୀୟ ସମ୍ମାନପ୍ରଦର୍ଶନ କରା-ଯାଇଥିଲା । ପି.ଏମ.ଜି, ମାଷ୍ଟରକେଣ୍ଟିନ୍, ରାଜମହଲ, କଳ୍ପନା ଛକ, ରବି ଟକିଜ, ଉତ୍ତରା ଛକ ଦେଇ ବିଜୁବାବୁଙ୍କ ମହାଯାତ୍ରା ପୁରୀ ଅଭିମୁଖେ ଚାଲିଯାଇଥିଲା । ପ୍ରତ୍ୟେକ ଛକରେ ଦର୍ଶନ ପାଇଁ ମାତ୍ର ଦୁଇମିନିଟ ଲେଖା ବିଜୁବାବୁଙ୍କ ରଥକୁ ଅଟକାଇ ଦିଆଯାଉଥିଲା । ହଜାର ହଜାର ଶୋକାକୁଳ ଜନତା ପ୍ରିୟନେତାଙ୍କ ଦର୍ଶନ ପାଇଁ ରାସ୍ତାର ଦୁଇଧାରରେ ଅପେକ୍ଷା କରି ଥିବାର ଲକ୍ଷ୍ୟ କରାଯାଉଥିଲା ।

ସେଦିନ ୪ଟା ୧୦ ମିନିଟରେ ବିଜୁବାବୁଙ୍କ ମରଶରୀର ଶୋଭା-ଯାତ୍ରା ପୁରୀ ସହରରେ ପହଞ୍ଚିଲା । ତାପରେ ବିରାଟ ପଟୁଆରରେ ପାର୍ଥିବ ଶରୀରକୁ ସିଂହଦ୍ୱାର ସମ୍ମୁଖକୁ ଅଣାଯାଇଥିଲା । ସେଠାରୁ ଭି.ଆଇ.ପି ରୋଡ୍ ଦେଇ ସ୍ୱର୍ଗଦ୍ୱାରକୁ ନିଆଗଲା । ସେଠାରେ ରାଷ୍ଟ୍ରୀୟ ମର୍ଯ୍ୟାଦାସ୍ୱରୂପ ପୋଲିସ୍ ବାହିନୀ ପକ୍ଷରୁ **ତୋପ ସଲାମୀ** ଦିଆଗଲା । ଦେଶ ତଥା ରାଜ୍ୟର ପ୍ରମୁଖ ନେତାମାନେ ବିଜୁବାବୁଙ୍କୁ ଦେଶ ତରଫରୁ ଓ ଲୋକମାନଙ୍କ ତରଫରୁ ଶେଷସମ୍ମାନ ଜଣାଇ ପୁଷ୍ପମାଲ୍ୟ ଅର୍ପଣ କଲେ ।

ଶେଷ ଶ୍ରଦ୍ଧାଞ୍ଜଳି ଜଣାଇବା ଉଦ୍ଦେଶ୍ୟରେ ସେଠାରେ ଉପସ୍ଥିତ ଥିଲେ— ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ଦେବେଗୌଡ଼ା, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ, ଶ୍ରୀ ଚନ୍ଦ୍ରଶେଖର, ପୂର୍ବତନ ଉପପ୍ରଧାନମନ୍ତ୍ରୀ ଶ୍ରୀ ଦେବୀଲାଲ, ବିଜେପିର ସଭାପତି ଶ୍ରୀ ଏଲ୍.କେ. ଆଡଭାନୀ, ବିହାର ରାଜ୍ୟର ମୁଖ୍ୟମନ୍ତ୍ରୀ ଶ୍ରୀ ଲାଲୁପ୍ରସାଦ ଯାଦବ, କେନ୍ଦ୍ରମନ୍ତ୍ରୀ ରାମବିଳାସ ପାଶୱାନ୍, ଶ୍ରୀ ଦିଲ୍ଲୀପ ରାୟ, ଶ୍ରୀ ଏସ୍,ଆର. ବୋମାଇ, ଶ୍ରୀ ୱାଇ.ନାଇଡୁ, ରାଜସ୍ଥାନର ମୁଖ୍ୟମନ୍ତ୍ରୀ ଶ୍ରୀ ଭୈରୋଁସିଂ ଶେଖାୱାତ, ଆନ୍ଧ୍ରପ୍ରଦେଶର ରାଜ୍ୟପାଳ ଶ୍ରୀ କୃଷ୍ଣକାନ୍ତ, ଯୋଜନା କମିଶନର ଉପାଧ୍ୟକ୍ଷ ଶ୍ରୀ ମଧୁ ଦଣ୍ଡବତେ, ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ, ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଉପମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମଣ୍ଡଳର ବହୁସଂଖ୍ୟକ ସଦସ୍ୟ, ବହୁପୂର୍ବତନ ମନ୍ତ୍ରୀ, ବିଧାୟକ, ଜିଲା ପରିଷଦର ସଭ୍ୟମାନେ ଏବଂ ଇଣ୍ଡୋନେସିଆର ରାଷ୍ଟ୍ରଦୂତ ଓ ସେ ଦେଶର ପ୍ରତିନିଧିମଣ୍ଡଳୀ ।

ସ୍ୱର୍ଗଦ୍ୱାରରେ ମଧ୍ୟ ଲକ୍ଷ ଲକ୍ଷ ଜନତାଙ୍କ ଭିଡ଼ । ସତେକି ଦ୍ୱିତୀୟବାର ମହାପ୍ରଭୁଙ୍କର ନବକଳେବର ହେଉଛି ! ଅପୂର୍ବ ଥିଲା — ସେ ଦୃଶ୍ୟ ! ଲକ୍ଷ ଲକ୍ଷ ଜନତାଙ୍କର ବ୍ୟାକୁଳ ଗୃହାଣୀ, ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ କର୍ମୀମାନଙ୍କର କ୍ରନ୍ଦନଧ୍ୱନି ଥିଲା— ହୃଦୟ ବିଦାରକ । ଶାନ୍ତି ଶୃଙ୍ଖଳା ପାଇଁ ସକଳପ୍ରକାର ବ୍ୟବସ୍ଥା ହୋଇଥିବା ସତ୍ତ୍ୱେ ପ୍ରବଳ ଜନଗହଳିକୁ ସମ୍ଭାଳିବା

ସମ୍ଭବପର ହୋଇନଥିଲା । ବିଶାଳ ଜନସମୁଦ୍ରକୁ ଦେଖି ଜାତୀୟ ନେତାମାନେ ହତବାକ୍ ହୋଇଯାଇଥିଲେ । ଏଥିରୁ ବିଜୁବାବୁଙ୍କ ଲୋକପ୍ରିୟତା ସହଜରେ ଅନୁମାନ କରିହେଇଯାଉଥିଲା ।

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ଚନ୍ଦନକାଠ ଶଯ୍ୟାରେ ବିଜୁବାବୁଙ୍କ ମରଶରୀରକୁ ରଖାଗଲା । ତାଙ୍କର ବଡ଼ପୁଅ ପ୍ରେମବାବୁ ପରଂପରା ଅନୁସାରେ ଅପରାହ୍ଣ ୫ଟା ୫୦ ମିନିଟ୍‌ରେ ଆଗ ବିଜୁବାବୁଙ୍କୁ ମୁଖାଗ୍ନି ଦେଲେ । ପରେ ପରେ ନବୀନବାବୁ ମଧ୍ୟ ମୁଖାଗ୍ନି ଦେଲେ । ଚନ୍ଦନକାଠ ଓ ଘିଅର ଲେଲିହାନ ଶିଖାର ଦୀର୍ଘବପୁ ବିଜୁବାବୁଙ୍କ ପାର୍ଥିବ ଶରୀର ପଞ୍ଚ-ମହାଭୂତରେ ବିଲୀନ ହୋଇଗଲା । ଦଶଲକ୍ଷରୁ ଉର୍ଦ୍ଧ୍ୱ ଶୋକାକୁଳ ଜନତା ଘରଦ୍ୱାର, ପିଲାଛୁଆ, ରୋଷେଇ ଛାଡ଼ି ବିଜୁବାବୁଙ୍କୁ ଶେଷସମ୍ମାନ ଜଣାଇବାକୁ ଯେଭଳି ଭୁବନେଶ୍ୱର ଓ ପୁରୀକୁ ଧାଇଁ ଆସିଥିଲେ, ସେଭଳି ଘଟଣା କ'ଣ ସତରେ ଓଡ଼ିଶାରେ ପୁନରାବୃତ୍ତି ହୋଇପାରିବ ? ବିଶ୍ୱାସ ହୁଏନାହିଁ । ଆମକୁ ମନେରଖିବାକୁ ହେବ ଯେ— ଓଡ଼ିଶା ମାଟିରେ ଜନ୍ମହୋଇ ଓଡ଼ିଆମାନଙ୍କର ସ୍ୱାର୍ଥକୁ ନେଇ ଯେଉଁ ମହାପୁରୁଷ ଦୁଇଜଣ ପ୍ରତ୍ୟେକ ଓଡ଼ିଆଙ୍କୁ ଋଣୀ କରି ଦେଇଯାଇଛନ୍ତି— ସେ ହେଲେ ଜାତୀୟଗୌରବ ମଧୁବାବୁ ଏବଂ କଳିଙ୍ଗର ଶେଷସମ୍ରାଟ ବିଜୁବାବୁ । ତାଙ୍କୁ ଆମର କୋଟି କୋଟି ପ୍ରଣାମ ।

# ବିଜୁବାବୁଙ୍କ ଜୀବନର ବିଶେଷ ଦିବସ

| | |
|---|---|
| ୧୯୧୬ | ମାର୍ଚ୍ଚ ୫ ତାରିଖରେ କଟକ ସହରର ତୁଳସୀପୁରସ୍ଥିତ ଆନନ୍ଦ ଭବନରେ ଜନ୍ମ । |
| ୧୯୨୩ | ଆପେଣ୍ଡିସ୍ ଫାଟିଯିବାରୁ ଜୀବନ ସଂକଟାପନ୍ନ, ଅସ୍ତ୍ରୋପଚାରରେ ଆରୋଗ୍ୟ ଲାଭ । |
| ୧୯୨୬ | କଟକର ସ୍ୱରାଜ ଆଶ୍ରମଠାରେ ମହାତ୍ମା ଗାନ୍ଧିଙ୍କୁ ଦେଖିବାକୁ ଯାଇ କିଶୋର ବିଜୁ ଗୋରା ପୋଲିସ୍‌ଙ୍କ ଲାଠି ମାଡ଼ରେ ଆହତ । |
| ୧୯୨୭ | ମିଶନ ସ୍କୁଲ୍‌ଛାଡ଼ି ରେଭେନ୍‌ସା କଲେଜିଏଟ ସ୍କୁଲ୍‌ରେ ଯୋଗଦାନ । |
| ୧୯୩୨ | ରେଭେନ୍‌ସା କଲେଜ୍‌ରେ ଆଇ.ଏସ୍.ସି. ପଢୁଥିବା ବେଳେ କଟକରୁ ପେଶଓ୍ୱାର ପର୍ଯ୍ୟନ୍ତ ସାଇକେଲ୍ ଯୋଗେ ଦୁଃସାହସିକ ଯାତ୍ରା । |
| ୧୯୩୪ | ବି.ଏସ୍.ସି. ପଢ଼ା ଛାଡ଼ି ପାଇଲଟ୍ ଟ୍ରେନିଂରେ ଯୋଗଦାନ । |
| ୧୯୩୭ | ‘ଇଣ୍ଡିଆନ୍ ନ୍ୟାସ୍‌ନାଲ ଏୟାର ୱେ୍ଜ୍‌ରେ ପାଇଲଟ୍ ରୂପେ ଯୋଗଦାନ । |
| ୧୯୩୮ | ଜ୍ଞାନଦେବୀଙ୍କୁ ବିବାହ । |
| ୧୯୪୦ | ଗୋରା ସରକାର ପାଖରେ ଚାକିରି କରି ମଧ ଭାରତୀୟ ସ୍ୱାଧୀନତା ସଂଗ୍ରାମୀଙ୍କ ସହ ଯୋଗସୂତ୍ର ସ୍ଥାପନ । |
| ୧୯୪୧ | ଫେବୃୟାରୀ ୧୭ ତାରିଖ ଦିନ ପିତା ଲକ୍ଷ୍ମୀ ନାରାୟଣ ପଟ୍ଟନାୟକଙ୍କ ବିୟୋଗ । |
| ୧୯୪୨ | ଏପ୍ରିଲ୍ ୨୦ରେ ମାତା ଆଶାଦେବୀଙ୍କ ଦେହାନ୍ତ । |
| ୧୯୪୩ | ଇଣ୍ଡିଆନ୍ ନ୍ୟାସ୍‌ନାଲ ଏୟାର ୱେ୍ଜ୍‌ର ପାଇଲଟ ତଥା ଭାରତର ତତ୍‌କାଳିନ ବଡ଼ଲାଟ୍ ଆଭେଲ୍‌ଙ୍କର ପାଇଲଟ୍ ହେବାର ସୁଯୋଗ ପାଇଥିବା ବିଜୁବାବୁ ଏହାର ସୁବିଧା ନେଇ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯୋଗାଉଥିବା ଦୋଷରେ ଜାନୁୟାରୀ ୧୩ ତାରିଖ ଦିନ ଦିଲ୍ଲୀରେ ଗିରଫ । |
| ୧୯୪୪ | ବି. ପଟ୍ଟନାୟକ ଆଣ୍ଡ କମ୍ପାନୀ ନାମରେ ବ୍ୟବସାୟ ପ୍ରତିଷ୍ଠାନ ଆରମ୍ଭ । |
| ୧୯୪୫ | ପ୍ୟାରୋଲ୍‌ରେ କାରାମୁକ୍ତ । |
| ୧୯୪୬ | ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଭାବେ ନିର୍ବାଚିତ । |
| ୧୯୪୭ | ପଣ୍ଡିତ ନେହେରୁଙ୍କ ପରାମର୍ଶକ୍ରମେ ଇଣ୍ଡୋନେସିଆର ସ୍ୱାଧୀନତା ଆନ୍ଦୋଳନର ନେତୃବୃନ୍ଦଙ୍କ ସହ ଯୋଗଯୋଗ ସ୍ଥାପନ । |

| | |
|---|---|
| ୧୯୪୭ | କଟକ ସହରରୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ । |
| ୧୯୫୦ | ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମରେ ଗୁରୁତ୍ୱପୂର୍ଣ୍ଣ ସହଯୋଗ ନିମିତ୍ତ ଇଣ୍ଡୋନେସିଆ ସରକାର ଦ୍ୱାରା ସମ୍ମାନିତ । |
| ୧୯୫୧ | ଜାତିସଂଘର ୟୁନେସ୍କୋ ଜରିଆରେ ' କଳିଙ୍ଗ ପୁରସ୍କାର' ପ୍ରଚଳନ ଶୁଭାରମ୍ଭ । |
| ୧୯୫୨ | ଗଞ୍ଜାମର ଭଞ୍ଜନଗର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀଭାବେ ରାଜ୍ୟ ବିଧାନ ସଭାକୁ ନିର୍ବାଚିତ । |
| ୧୯୬୦ | କଳିଙ୍ଗ ଟ୍ରଷ୍ଟ ପକ୍ଷରୁ ଅକ୍ଟୋବର ୨ ତାରଖ ଦିନ 'କଳିଙ୍ଗ' ଦୈନିକ ସମ୍ବାଦ ପତ୍ରର ପ୍ରକାଶନ । |
| ୧୯୬୧ | ପ୍ରଦେଶ କଂଗ୍ରେସ ଦଳର ସଭାପତି । ଚୌଦ୍ୱାର ବିଧାନସଭା ଆସନରୁ କଂଗ୍ରେସ ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇ ଜୁନ୍ ୨୩ତାରିଖରେ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ । |
| ୧୯୬୨ | ଜାନୁଆରୀ ୩ ତାରିଖଦିନ ପ୍ରାଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କଠାରୁ ପାରାଦୀପ ବନ୍ଦର ନିର୍ମାଣ ପାଇଁ ପ୍ରତିଶ୍ରୁତି ଲାଭ । ଭାରତ - ଚୀନ ଯୁଦ୍ଧ ବେଳେ ପ୍ରଧାନମନ୍ତ୍ରୀଙ୍କ ସ୍ୱତନ୍ତ୍ର ଯୁଦ୍ଧ ପରାମର୍ଶଦାତା ଭାବେ ନିଯୁକ୍ତ । |
| ୧୯୬୩ | ଅକ୍ଟୋବର ୨ ତାରିଖ ଦିନ କାମରାଜ ଯୋଜନା ଅନୁସାରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା । |
| ୧୯୬୪ | ଭୁବନେଶ୍ୱରଠାରେ ଜାତୀୟ କଂଗ୍ରେସର ପୂର୍ଣ୍ଣାଙ୍ଗ ଅଧିବେଶନର ଆୟୋଜନ । |
| ୧୯୬୭ | ତାଙ୍କ ବିରୋଧରେ ଅକ୍ଟୋବର ୨୬ ତାରିଖ ଦିନ ଖାନ୍ନା କମିଶନ ନିଯୁକ୍ତ । |
| ୧୯୬୯ | ଖାନ୍ନା କମିଶନ ଜାନୁଆରୀରେ ରିପୋର୍ଟ ଦାଖଲ, ତାଙ୍କ ବିରୁଦ୍ଧରେ କୌଣସି ଦୁର୍ନୀତି ପ୍ରମାଣିତ ହୋଇ ପାରିଲା ନାହିଁ । ଜାତୀୟ କଂଗ୍ରେସ ଛାଡ଼ି 'ଉତ୍କଳ କଂଗ୍ରେସ' ନାମରେ ଏକ ଆଞ୍ଚଳିକ ଦଳ ଗଠନ । |
| ୧୯୭୧ | ଉତ୍କଳ କଂଗ୍ରେସ ପ୍ରାର୍ଥୀ ଭାବେ ଏକକାଳିନ ୪ଟି ବିଧାନସଭା ଆସନରୁ ପରାଜିତ ହେଲେ ମଧ୍ୟ ଉପନିର୍ବାଚନରେ ରାଜନଗର ଆସନରୁ ବିଜୟୀ । |
| ୧୯୭୩ | ଇଣ୍ଡୋନେସିଆ ପକ୍ଷରୁ 'ଭୂମିପୁତ୍ର' ଉପାଧିରେ ଭୂଷିତ । |
| ୧୯୭୪ | ଉତ୍କଳ କଂଗ୍ରେସ ପ୍ରାର୍ଥୀଭାବେ ବିଧାନସଭାକୁ ନିର୍ବାଚିତ । |
| ୧୯୭୫ | ଜରୁରୀ କାଳିନ ପରିସ୍ଥିତି ଘୋଷଣା ବେଳେ ଜୁନ୍ ୨୬ ତାରଖ ଦିନ ଦିଲ୍ଲୀଠାରେ 'ମିସା'ରେ ଗିରଫ । |
| ୧୯୭୭ | କେନ୍ଦ୍ରାପଡ଼ା ଲୋକସଭା ଆସନରୁ ଲୋକଦଳ ପ୍ରାର୍ଥୀଭାବେ ନିର୍ବାଚିତ ହୋଇ |

ମୋରାଜୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ଖଣି ଓ ଇସ୍ପାତ ମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ ।

୧୯୭୯ ଚରଣ ସିଂଙ୍କ ମନ୍ତ୍ରୀମଣ୍ଡଳରେ ଖଣି, ଇସ୍ପାତ ଓ କୋଇଲା ବିଭାଗର ଦାୟିତ୍ୱ ଗ୍ରହଣ ।

୧୯୮୦ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ନିର୍ବାଚିତ ।

୧୯୮୪ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ନିର୍ବାଚିତ ।

୧୯୮୫ ଜନତା ଦଳ ପ୍ରାର୍ଥୀ ରୂପେ ଭୁବନେଶ୍ୱର ବିଧାନ ଆସନ ଓ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ନିର୍ବାଚିତ । ଲୋକସଭା ଆସନରୁ ଇସ୍ତଫା ଦେଇ ୨୨.୩.୮୫ ରୁ ୩.୩.୯୦ ପର୍ଯ୍ୟନ୍ତ ରାଜ୍ୟ ବିଧାନସଭାର ବିରୋଧୀ ଦଳ ନେତା ।

୧୯୯୦ ଭୁବନେଶ୍ୱର ବିଧାନସଭା ଆସନରୁ ଜନତାଦଳ ପ୍ରାର୍ଥୀ ରୂପେ ନିର୍ବାଚିତ ହୋଇ ମାର୍ଚ୍ଚ ୫ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ ।

୧୯୯୫ ଜନତା ଦଳ ପ୍ରାର୍ଥୀ ଭାବେ ଭୁବନେଶ୍ୱର ବିଧାନସଭା ଆସନରୁ ନିର୍ବାଚିତ ହୋଇ ମାର୍ଚ୍ଚ ୨୩ ତାରିଖରୁ ବିଧାନସଭାରେ ବିରୋଧୀ ଦଳର ନେତା ଭାବେ ଦାୟିତ୍ୱ ଗ୍ରହଣ ।

୧୯୯୬ ଜନତା ଦଳ ପ୍ରାର୍ଥୀ ଭାବେ ଗଞ୍ଜାମ ଜିଲ୍ଲାର ଆସ୍କା ଓ କଟକ ଲୋକସଭା ଆସନରୁ ବିଜୟୀ । ମେ ମାସ ୫ ତାରିଖରେ ଭୁବନେଶ୍ୱର ବିଧାନସଭା ଆସନ ତଥା ବିରୋଧିଦଳ ନେତା ପଦତ୍ୟାଗ । କଟକ ଲୋକସଭା ଆସନରୁ ଇସ୍ତଫା ।

୧୯୯୭ ମାର୍ଚ୍ଚ ୨୮ ତାରିଖରେ ଜନତା ଦଳର ଏକ ବୈଠକରେ ଯୋଗଦାନ । ସାମ୍ବାଦିକ ସମ୍ମିଳନୀ ପରେ ଛାତିରେ ଯନ୍ତ୍ରଣା ଅନୁଭବ କରିବାରୁ ସେହି ଦିନହିଁ ଦିଲ୍ଲୀ ଯାତ୍ରା । ମାର୍ଚ୍ଚ ୨୯ ତାରିଖ ଦିନ ନିଃଶ୍ୱାସ ପ୍ରଶ୍ୱାସ ନେବାରେ ଭୀଷଣ କଷ୍ଟ ଅନୁଭବ କରିବାରୁ ରାମ ମନୋହର ଲୋହିଆ ହସ୍ପିଟାଲରେ ଭର୍ତ୍ତି କରାଗଲା । ମାର୍ଚ୍ଚ ୩୦ ତାରିଖ ଦିନ ଅବସ୍ଥାରେ କୌଣସି ପରିବର୍ତ୍ତନ ନ ହେବାରୁ ଏସ୍କର୍ଟ ଡାକ୍ତରଖାନାକୁ ସ୍ଥାନାନ୍ତରିତ । ଏପ୍ରିଲ୍ ୧୫ ତାରିଖ ଦିନ ଅବସ୍ଥାରେ ସାମାନ୍ୟ ଉନ୍ନତି ।

ଏପ୍ରିଲ୍ ୧୬ - ଅବସ୍ଥାରେ ଅବନତି , ଭୀଷଣ ଜ୍ୱର ସହ ଚେତାଶୂନ୍ୟ ।

ଏପ୍ରିଲ୍ ୧୭ - ସକାଳ ୮.୧୫ମିନିଟ୍‌ରେ ଶେଷ ନିଃଶ୍ୱାସ ତ୍ୟାଗ ।

## ଯେଉଁସବୁ ଘଟଣା ବିଜୁବାବୁଙ୍କ ଜୀବନର ଗତିପଥ ବଦଳାଇ ଦେଇଥିଲା

- ବିଜୁବାବୁ ଏକ ଉଚ୍ଚ ଅଭିଳାଷୀ ମନ ପାଇଥିଲେ, ଯାହା ଥିଲା-ଭଗବାନଙ୍କର ଉପହାର ।
- ଭ୍ରମରବର ସାହୁ ଓ ଅମର ଦେଙ୍କ ପରି ସାଥୀ ପାଇଥିଲେ, ଯେଉଁମାନେ ତାଙ୍କୁ ସବୁବେଳେ ଉତ୍ସାହିତ କରିଥିଲେ । କଟକରୁ ପେଶାୱାର (ପାକିସ୍ଥାନ) ଶୂନଗାଡ଼ି (ସାଇକେଲ୍)ରେ ଯାତ୍ରା ସମୟରେ ମଧ୍ୟ ସେମାନେ ଥିଲେ ତାଙ୍କର ସାଥୀ ।
- ରୟାଲ୍ ଏୟାର ଫୋର୍ସରେ ଚାକିରି କରିଥିବା ସାଥୀ ଅମର ଦେ ସବୁ ବେଳେ ତାଙ୍କ ପ୍ରତ୍ୟେକ ଚିଠିରେ ବିଜୁବାବୁଙ୍କୁ ପରାମର୍ଶ ଦେଉଥିଲେ । ଏୟାର ଫୋର୍ସରେ ଯୋଗ ନ ଦେଇ ବିମାନ ଚାଳନା ଶିକ୍ଷା କରିବା ପାଇଁ ।
- ବୈମାନିକ ତାଲିମ୍ ପାଇଁ ଟଙ୍କା ଆବଶ୍ୟକ । ପିତା ସରକାରୀ ଚାକିରିରୁ ଅବସର ନେଇ ସାରିଥାନ୍ତି । ପାରଳା ମହାରାଜାଙ୍କ ଦେଓ୍ୱାନ ଭାବେ ଅଚାନକ ନିଯୁକ୍ତି ମିଳିଲା ୧୨ଶହ ଟଙ୍କା ଦରମାରେ । ତା' ସହିତ ସରକାରୀ ଚାକିରି ବାବଦରେ ପେନ୍‌ସନ୍ ଟଙ୍କା । ତଥାପି ବିଜୁଙ୍କ ବୈମାନିକ ତାଲିମ୍ (ଛତିଶ ମାସ) ପାଇଁ ସେ ମାସକୁ ୧ ହଜାର ଟଙ୍କା ଦେବାକୁ ରାଜି ହୋଇଥିଲେ ।
- ରୟାଲ୍ ଏୟାର ଫୋର୍ସର ଜଣେ ଦୁର୍ଦ୍ଧର୍ଷ ବୈମାନିକ ଭାବେ ଖ୍ୟାତି ।
- ସ୍ୱାଧୀନତା ସଂଗ୍ରାମୀଙ୍କ ସହ ଯୋଗାଯୋଗ ରଖିବା, ସେମାନଙ୍କ ସଂସ୍ପର୍ଶରେ ଆସି ଏହି ସଂଗ୍ରାମରେ ସାମିଲ୍ ହୋଇ ଜେଲ୍ ଯିବା ।
- ଏକ ଘରୋଇ ବିମାନ ଚଳାଚଳ ସଂସ୍ଥା ପ୍ରତିଷ୍ଠା କରିବା ।
- ଦୁର୍ଦ୍ଧର୍ଷ ପାଇଲଟ ଭାବେ କାଶ୍ମୀରରେ ପ୍ରଥମେ ଭାରତୀୟ ସେନାଙ୍କୁ ଅବବତରଣ କରାଇବା, ଭାରତ ଓ କାଶ୍ମୀର ମଧ୍ୟରେ ସଂଯୋଗ ସ୍ଥାପନ କରି କାଶ୍ମୀର ରାଜାଙ୍କୁ ସାହାଯ୍ୟ କରିବା, ନେଫା ଅଞ୍ଚଳରେ ଭାରତୀୟ ସେନାଙ୍କ ପାଇଁ ବିମାନରେ ଖାଦ୍ୟ ପହଞ୍ଚାଇ ଦେଶବାସୀଙ୍କ ପ୍ରିୟ ହେବା ।
- ଇଣ୍ଡୋନେସିଆରେ ଡଚ୍ ସରକାରଙ୍କ ଅମାନୁଷିକ ଅତ୍ୟାଚାର ସମୟରେ ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କର ସହଯୋଗୀ ମହମ୍ମଦ ହାଟ୍ଟା, ଡକ୍ଟର ସାହାରିୟର୍ ଓ ଅନ୍ୟମାନଙ୍କୁ ନିଜର ଡାକୋଟା ବିମାନରେ ବସାଇ ଭାରତ ନେଇଆସିବା ଏବଂ ଏହି ଦୁଃସାହସିକ କାର୍ଯ୍ୟ ପାଇଁ ଆନ୍ତର୍ଜାତୀୟ ଖ୍ୟାତି ତଥା ନେହେରୁଙ୍କ ସାବାସି ପାଇବା ।
- ଡକ୍ଟର ହରେକୃଷ୍ଣ ମହତାବଙ୍କ ରାଜନୈତିକ ଶିଷ୍ୟ ହେବାର ସୌଭାଗ୍ୟ ଲାଭ କରି ରାଜନୀତିରେ ଯୋଗଦେବା ।
- ଦେଶରେ ନିଜର ଏକ ଶିଳ୍ପ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ।

# ବିଜୁବାବୁଙ୍କ ବିୟୋଗରେ କିଏ କ'ଣ କହିଲେ

## ଡକ୍ଟର ଶଙ୍କରଦୟାଲ୍ ଶର୍ମା (ରାଷ୍ଟ୍ରପତି) :-

ଜାତୀୟ ପୁର୍ନଗଠନରେ ବିଜୁଙ୍କ ଭୂମିକା ଅବିସ୍ମରଣୀୟ ହୋଇ ରହିବ । ପ୍ରବୀଣ ସାଂସଦ, କେନ୍ଦ୍ରମନ୍ତ୍ରୀ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ତାଙ୍କର ଭୂମିକା ମଧ୍ୟ ବେଶ୍ ଉଲ୍ଲେଖନୀୟ ।

## କେ.ଆର୍.ନାରାୟଣନ୍ (ଉପରାଷ୍ଟ୍ରପତି):-

ସ୍ୱାଧୀନତା ସଂଗ୍ରାମୀ ଓ ଭାରତୀୟ ବିପ୍ଳବର ଜଣେ ସନ୍ତାନ ହିସାବରେ ବିଜୁ ବାବୁ ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ବିଭିନ୍ନ ଭୂମିକରେ ଦେଶବାସୀଙ୍କ ସେବା କରିଥିଲେ । ଭାରତୀୟ ରାଜନୀତି ଓ ବିକାଶରେ ବିଜୁଙ୍କ ଭୂମିକା ସମୟ ପାଇଁମନେ ରହିବ ।

## ଏଚ୍.ଡ଼ି. ଦେବେଗୌଡ଼ା (ତତ୍କାଳିନ ପ୍ରଧାନମନ୍ତ୍ରୀ):-

ବିଜୁଙ୍କ ବିୟୋଗରେ ଭାରତ ଏହାର ଜଣେ ମହାନ ପୁତ୍ରଙ୍କୁ ହରାଇଛି । ବିଜୁ ବାବୁ ଜଣେ ତୁଙ୍ଗ ଓ ପ୍ରେରଣାଦାୟକ ବ୍ୟକ୍ତିତ୍ୱ ଥିଲେ । ବିଜୁଙ୍କ ବିୟୋଗରେ ମୁଁ ଜଣେ ବ୍ୟକ୍ତିଗତ ମିତ୍ର ହରାଇଛି । ତାଙ୍କ ମନରେ ଭୟ ନଥିଲା ଏବଂ ଏହା ହିଁ ଯୁବ ସମାଜ ପାଇଁ ପ୍ରେରଣା ।

## ପି.ଏ.ସାଙ୍ଗମା (ଲୋକସଭା ବାଚସ୍ପତି):-

ବିଜୁବାବୁ ସଂକୀର୍ଣ୍ଣ ରାଜନୀତିର ଉର୍ଦ୍ଧ୍ୱରେ ଥିଲେ । ତାଙ୍କ ବିୟୋଗରେ ଦେଶ ଆଉ ଜଣେ ସ୍ୱାଧୀନତା ସଂଗ୍ରାମୀ ହରାଇଲା ।

## ଅଟଳ ବିହାରୀ ବାଜପେୟୀ (ବିରୋଧୀ ଦଳ ନେତା, ଲୋକସଭା):-

ଦେଶ କେବଳ ଜଣେ ରାଜନୀତଜ୍ଞଙ୍କୁ ନୁହେଁ, ଜଣେ ମହାରଥୀକୁ ହରାଇଛି । ସେ ଜଣେ ଅଗ୍ରଣୀ ସ୍ୱାଧୀନତା ସଂଗ୍ରାମୀ, ଦକ୍ଷ ପ୍ରଶାସକ ଏବଂ ନୂତନ ଓଡ଼ିଶାର ନିର୍ମାତା । ଦେଶର ଆବଶ୍ୟକତା ବେଳେ ସେ ଦଳୀୟ ରାଜନୀତିରୁ ଉର୍ଦ୍ଧ୍ୱକୁ ଯାଇ ଉପଦେଶ ପ୍ରଦାନ କରୁଥିଲେ, ଯାହା ଆଜିକାଲିର ରାଜନୀତିଜ୍ଞମାନଙ୍କ ମଧ୍ୟରେ । କ୍ୱଚିତ୍ ଦେଖାଯାଏ । ... ଭାରତୀୟ ରାଜନୀତିର ଭୀଷ୍ମ ପିତାମହ ଆଉ ନାହାନ୍ତି ଭାବିଲା ବେଳକୁ ମୁଁ ଶବ୍ଦ ପାଉନି କହିବାକୁ ।

## ଚନ୍ଦ୍ରଶେଖର (ପୂର୍ବତନ ପ୍ରଧାନମନ୍ତ୍ରୀ)

ଦେଶ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରମୀ, ଦକ୍ଷ ପ୍ରଶାସକ ଓ ବରିଷ୍ଠ ସମାଜସେବୀ ତଥା ଅନନ୍ୟ ପ୍ରତିଭା ସମ୍ପନ୍ନ ବ୍ୟକ୍ତିଙ୍କୁ ହରାଇଲୁ ।

## ଲାଲୁ ପ୍ରସାଦ ଯାଦବ (ଜନତା ଦଳ ସଭାପତି)

ବିଜୁବାବୁ ଆମ ପ୍ରେରଣାର ଉତ୍ସ ଥିଲେ । ଆମେ ଏକ ମହାନ ବ୍ୟକ୍ତିଙ୍କୁ ହରାଇଲୁ ।

**ଲାଲକୃଷ୍ଣ ଆଡ଼ଭାନୀ (ବି.ଜେ.ପି.) :-**

ଜଣେ ଯୁଗ ପୁରୁଷ ଭଳି ସେ ପ୍ରାଧାନ୍ୟ ବିସ୍ତାର କରି ଆସିଥିଲେ । ବିଜୁ ପଟ୍ଟନାୟକଙ୍କୁ ବାଦ୍‌ଦେଇ ଓଡ଼ିଶାକୁ ଚିନ୍ତା କରାଯାଇ ପାରିବ ନାହିଁ ।

**ଭି.ପି. ସିଂହ (ପୂର୍ବତନ ପ୍ରଧାନମନ୍ତ୍ରୀ):-**

ବିଜୁ ପଟ୍ଟନାୟକ ଭାରତୀୟ ରାଜନୀତିର ଜଣେ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଥିଲେ । ନିଜର ବ୍ୟକ୍ତିଗତ ଜୀବନକୁ ବିପଦପୂର୍ଣ୍ଣ କରି ଦେଶ ଓ ଜାତିର ଟେକ ରଖିବା ପାଇଁ ସେ ବହୁ କାର୍ଯ୍ୟ କରିଛନ୍ତି ।

**ଜ୍ୟୋତି ବସୁ (ମୁଖ୍ୟମନ୍ତ୍ରୀ, ପଶ୍ଚିମବଙ୍ଗ):-**

ଗତ ବହୁ ଦଶନ୍ଧି ଧରି ବିଜୁବାବୁ ଭାରତୀୟ ରାଜନୀତିରେ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଆସିଛନ୍ତି । ଓଡ଼ିଶାର ବିକାଶ ଓ଼ ଉନ୍ନୟନ କ୍ଷେତ୍ରରେ ସେ ମୁଖ୍ୟମନ୍ତ୍ରୀ ଭାବେ ଯଥେଷ୍ଟ କାମ କରିଥିଲେ । ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ପାଇଁ ତାଙ୍କ ଅବଦାନ ଅବିସ୍ମରଣୀୟ ।

**ଡଃ ଫାରୁକ୍ ଅବ୍‌ଦୁଲ୍ଲା (ମୁଖ୍ୟମନ୍ତ୍ରୀ, ଜାମ୍ମୁ ଓ କାଶ୍ମୀର) :-**

ବିଜୁ ବାବୁ ଜଣେ ମହାନ ସ୍ୱାଧୀନତା ସଂଗ୍ରାମୀ ଏବଂ ପ୍ରତିଭାବାନ୍ ରାଜନୈତିକ ତଥା ସାମାଜିକ ନେତା ଥିଲେ ।

**ଏସ୍.ଆର୍. ବୋମାଇ :-**

ସେ ଥିଲେ ଜନମାନସର ପ୍ରବକ୍ତା । ସମଗ୍ର ଏସିଆ ମହାଦେଶ ତାଙ୍କର ପରାକାଷ୍ଠା ଓ ବଳିଦାନକୁ ସମ୍ମାନ ଦିଏ ।

**ରବିରାୟ (ପୂର୍ବତନ ବାଚସ୍ପତି):-**

ବିଜୁ ବାବୁଙ୍କ ମୃତ୍ୟୁ ଫଳରେ ଆମ ଦେଶରେ ଏକ ଯୁଗର ଅବସାନ ଘଟିଲା । ଜଣେ ସାହସୀ ଦୁର୍ଦ୍ଧର୍ଷ ବିମାନ ଚାଳକ ଭାବେ ସେ ଜୀବନ ଆରମ୍ଭ କରିଥିଲେ ଏବଂ ଏହା ତାଙ୍କ ରାଜନୀତିକୁ ମଧ୍ୟ ପ୍ରଭାବିତ କରିଥିଲା । ସେ କଳିଙ୍ଗ ସ୍ୱାଭିମାନର ପ୍ରତୀକ ଥିଲେ ।

**ଇନ୍ଦ୍ରଜିତ୍ ଗୁପ୍ତା (ମନ୍ତ୍ରୀ):-**

ବିଜୁ ପଟ୍ଟନାୟକ କେବଳ ଯେ ରାଜନୈତିକ କ୍ଷେତ୍ରରେ ନିଜର ସ୍ଥିତି ସୁଦୃଢ଼ କରି ପାରିଥିଲେ ତାହା ନୁହେଁ, ବରଂ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ମଧ୍ୟ ନିଜର ଦକ୍ଷତା ଯୋଗୁଁ ଲୋକମାନଙ୍କର ପ୍ରିୟ ହୋଇ ପାରିଥିଲେ ।

**ମନୋହର ଯୋଶୀ (ମୁଖ୍ୟମନ୍ତ୍ରୀ, ମହାରାଷ୍ଟ୍ର):-**

ଓଡ଼ିଶାର ଅର୍ଥନୈତିକ ବିକାଶ ତଥା ପ୍ରଶାସନିକ ଢ଼ାଞ୍ଚାରେ ପରିବର୍ତ୍ତନ ପାଇଁ ବିଜୁବାବୁ ସ୍ମରଣୀୟ ହୋଇ ରହିବେ ।

**ପ୍ରଫୁଲ୍ଲ ମହାନ୍ତ (ମୁଖ୍ୟମନ୍ତ୍ରୀ, ଆସାମ):-**

ବିଜୁଙ୍କ ବିୟୋଗରେ ଏ ଦେଶ ଜଣେ ଦୁର୍ଦ୍ଧର୍ଷ ସ୍ୱାଧୀନତା ସଂଗ୍ରାମୀଙ୍କୁ ହରାଇଲା ।

**ବାଙ୍କବିହାରୀ ଦାସ**

ତାଙ୍କ ମୃତ୍ୟୁ ଫଳରେ ଦେଶର ରାଜନୀତି କ୍ଷେତ୍ରରେ ଏକ ଶୂନ୍ୟସ୍ଥାନ ସୃଷ୍ଟିହେଲା । ଶେଷ ସ୍ୱାଧୀନତା ସଂଗ୍ରାମରେ ତାଙ୍କ ଅବଦାନ ଓ ଓଡ଼ିଶାର ବିକାଶ ପାଇଁ ତାଙ୍କ କୃତି ଅବିସ୍ମରଣୀୟ ।

**ଜାନକୀ ବଲ୍ଲଭ ପଟ୍ଟନାୟକ (ମୁଖ୍ୟମନ୍ତ୍ରୀ, ଓଡ଼ିଶା) :-**

କେତେକ ବ୍ୟକ୍ତିଙ୍କ ତିରୋଧାନରେ ଅନୁପସ୍ଥିତି ବିଶ୍ୱାସ କରି ହୁଏନାହିଁ । ବିଜୁବାବୁ ସେମାନଙ୍କ ମଧ୍ୟରୁ ଜଣେ ଥିଲେ । ଦୀର୍ଘ ୫୦ବର୍ଷ ଧରି ଓଡ଼ିଶାର ରାଜନୈତିକ ଦୃଶ୍ୟପଟ ଓ ଜନମାନସକୁ ସେ ପ୍ରଭାବିତ କରିଥିଲେ । ତାଙ୍କର ଦେଶପ୍ରେମ, ଦୁଃସାହସିକତା, ଓଡ଼ିଶା ପ୍ରତି ଗଭୀର ଅନୁରକ୍ତି ତାଙ୍କୁ ଲୋକଙ୍କ ମଧ୍ୟରେ ରଖିଥିଲା ।

**ନନ୍ଦିନୀ ଶତପଥୀ (ପୂର୍ବତନ ମୁଖ୍ୟମନ୍ତ୍ରୀ):-**

ତାଙ୍କୁ ଜଣେ କେନ୍ଦ୍ରମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଭାବରେ କହିବା ଦ୍ୱାରା ସେ ବହୁତ ଛୋଟ ହୋଇଯିବେ । ବରଂ ତାଙ୍କୁ ଜଣେ ଓଡ଼ିଆ ସନ୍ତାନ ଭାବେ ଭୂଷିତ କରିବା ତାଙ୍କ ପାଇଁ ସମ୍ମାନଜନକ ହେବ । ତେବେ ସେ ଜଣେ ନ ଥିଲେ, ଏକ ଅନୁଷ୍ଠାନ ଥିଲେ ।

**ନୀଳମଣି ରାଉତରାୟ (ପୂର୍ବତନ ମୁଖ୍ୟମନ୍ତ୍ରୀ):-**

ଦୀର୍ଘ ଅର୍ଦ୍ଧ ଶତାବ୍ଦୀ କାଳ ଆମେ ଏକ ସଂଗରେ କାମ କରିଛୁ । ସେ ଆଜି ଆମକୁ ଛାଡ଼ି ଚାଲିଯିବାରୁ ନିଜକୁ ନିର୍ଜୀବ ମନେ କରୁଛି । ବିଜୁବାବୁଙ୍କ ବିୟୋଗରେ ଦେଶ ଜଣେ ମହାନ ସ୍ୱାଧୀନତା ସଂଗ୍ରାମୀ ଓ ଅଦ୍ୱିତୀୟ ସାହସୀ ନେତାଙ୍କୁ ହରାଇଲା ।

**କବି ସଚ୍ଚି ରାଉତରାୟ :-**

ଓଡ଼ିଶାର ଋତୁରାଜ ବସନ୍ତ ଚାଲିଗଲେ । ଚିର ସବୁଜ ବିଜୁବାବୁ ଥିଲେ ଜଣେ ଅକୃତ୍ରିମ ଯୋଦ୍ଧା । ସେ ତାଙ୍କର ପ୍ରିୟ କଳିଙ୍ଗକୁ ସବୁ ଦିଗରୁ ଋଦ୍ଧିମନ୍ତ କରିବାରେ ଲାଗିପଡ଼ିଥିଲେ । ଶିଳ୍ପ, ବାଣିଜ୍ୟ, ରାଜନୀତି ପ୍ରଭୃତି କ୍ଷେତ୍ରରେ ସେ ଓଡ଼ିଶାକୁ ଅଗ୍ରସର କରିବାକୁ ସଂକଳ୍ପ କରିଥିଲେ । ଅନେକ ସ୍ୱପ୍ନ ତାଙ୍କର ସ୍ୱପ୍ନ ହୋଇ ରହିଗଲା । ତାଙ୍କୁ ହରାଇ ଆମେ ଅସହାୟବୋଧ କରୁଛୁ । ତାଙ୍କର ଆତ୍ମାର ସଦ୍‌ଗତି ହେଉ ଏହାହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

**ଜଷ୍ଟିସ୍ ରଙ୍ଗନାଥ ମିଶ୍ର:-**

ବିଜୁ ବାବୁ ଓଡ଼ିଆ ଜାତିର ସ୍ୱାଭିମାନ ଥିଲେ ।

**ଗୋପାଳ ରାମାନୁଜମ୍ (ରାଜ୍ୟପାଳ, ଓଡ଼ିଶା):-**

ବିଜୁ ପଟ୍ଟନାୟକ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ସୁ ପ୍ରଶାସକ ଥିଲେ । ଓଡ଼ିଶା ସମେତ ଇଣ୍ଡୋନେସିଆ ଜନସାଧାରଣଙ୍କ ଜନ ଜୀବନ ସହିତ ସେ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ଦୁଃସାହସିକ ଅଭିଯାନ ନିମନ୍ତେ ସେ ଦେଶବାସୀଙ୍କ ନିକଟରେ ଚିରଦିନ ନିମନ୍ତେ ସ୍ମରଣୀୟ ରହିବେ । ଓଡ଼ିଶା ପାଇଁ ସେ ଯେଉଁ କାମ କରିଯାଇଛନ୍ତି ସେଥି ନିମନ୍ତେ ତାଙ୍କୁ ରାଜ୍ୟବାସୀ ସବୁଦିନ ପାଇଁ ମନେ ରଖିବେ । ଜଣେ ସଂଗ୍ରାମୀ ଭାବେ ଗତ କିଛିଦିନ ଧରି ସେ ମୃତ୍ୟୁ ସହିତ ସଂଗ୍ରାମୀ କରିବା ପରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ବିଜୁ ପଟ୍ଟନାୟକଙ୍କ ମୃତ୍ୟୁ ଯୋଗୁ ଏକ ଯୋଗ୍ୟ ସନ୍ତାନ ହରାଇଲା ।

**ହିନ୍ଦୁସ୍ଥାନ ଟାଇମ୍ସ :-**

ଓଡ଼ିଶାର ନେତାମାନଙ୍କ ମଧ୍ୟରେ ବିଜୁ ପଟ୍ଟନାୟକ ଥିଲେ ଦୀର୍ଘତମ ବ୍ୟକ୍ତିତ୍ୱ, ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁ ସମୟରେ ଦେଶରେ ଆଦର୍ଶବାଦୀ ନେତାମାନଙ୍କ ଅଭାବ ନଥିଲା, ସେ ସମୟରେ ସେ ନିଜର ନିର୍ଭୀକ ଓ ସମ୍ବେଦନଶୀଳ ପ୍ରକୃତି ଯୋଗୁଁ ନେହେରୁ ଓ ଜୟପ୍ରକାଶଙ୍କ ପ୍ରିୟ ପାତ୍ର ହୋଇ ପାରିଥିଲେ ।

**ଦି ହିନ୍ଦୁ :-**

ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହନୀୟ ପରଂପରାରେ ସେ ପ୍ରତିନିଧିତ୍ୱ କରୁଥିଲେ । ଭାରତ ଛାଡ଼ ଆନ୍ଦୋଳନରେ ସେ ଥିଲେ ଶେଷ ସାରଥୀ । ଦେଶର ସଂକଟ ସମୟରେ ଜବାହରଲାଲ୍ ନେହେରୁ ଯେଉଁ କେତେକଙ୍କ ସହ ପରାମର୍ଶ କରୁଥିଲେ ସେମାନଙ୍କ ମଧ୍ୟରେ ବିଜୁବାବୁ ଥିଲେ ଜଣେ ।

**କେ.ବି.କି. ଟାଇମ୍ସ**

ଓଡ଼ିଶାର ବିକାଶ ପାଇଁ ସେ ନିରନ୍ତର କାମ କରୁଥିଲେ । ଆଧୁନିକ ଓଡ଼ିଶାର ନିର୍ମାତାମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ଉଲ୍ଲେଖନୀୟ । ସେ ଜଣେ ସକ୍ଷମ ରାଜନେତା ଓ ସଙ୍ଗଠକ ତ ଥିଲେ, ତା ସଂଗେ ସଂଗେ ଜଣେ ସଫଳ ପ୍ରଶାସକ ମଧ୍ୟ ଥିଲେ ।

